



ପ୍ରାଚୀ ଗ୍ରନ୍ଥମାଳା — ଏକତ୍ରିଂଶ

# ଚଉତିଶା-ମଧୁଚକ୍ର




ପ୍ରାଚୀ ସମିତି

# ଚଉତିଶା-ମଧୁଚକ୍ର

( ତୃତୀୟ ଖଣ୍ଡ )

---

ପ୍ରାଚୀ ସମିତି ପକ୍ଷରୁ

**ଶ୍ରୀ ବିଚ୍ଛନ୍ଦ ଚରଣ ପଟ୍ଟନାୟକ ବି: ଏ: ଙ୍କ**

ଦ୍ୱାରା ସଙ୍କଳିତ

ଓ

ଚଉତିଶା ଚନ୍ଦ୍ରିକା ଟୀକା ସହ

ସମ୍ପାଦିତ

---

ପ୍ରକାଶକ :—

**ପ୍ରାଚୀ ସମିତି, କଟକ**

ମୂଲ୍ୟ ଆଠଅଣା

# ସୂଚୀପତ୍ର

ବିଷୟ                                                    ପୃଷ୍ଠାଙ୍କ

ମୁଖବନ୍ଧ





# ଚଉତିଶା ମଧୁଚକ୍ର

## ମଥୁରାବିଜେ ଚଉତିଶା

( ରାଗ କଲହଂସକେଦାର )

କାବ୍ୟଶୈଳୀରୁ ଗୀତିକାବ୍ୟରେ ମଥୁରାବିଜେ ଚଉତିଶାର ଜନପ୍ରିୟତା ଥିବାର ବୋଧହୁଏ । ଭକ୍ତଚରଣଙ୍କ ମଥୁରାମଙ୍ଗଳର "କୃଷ୍ଣ କହନ୍ତି ଶୁଣ ନନ୍ଦ ବନ୍ଧୁ" ମୂଳକ ତାର ମଥୁରା ପଦରେ ଏ ଚଉତିଶାର ବିଶେଷ ସ୍ପଷ୍ଟ ଦେଖାଯାଏ । ଆମ୍ଭେ ଶୈଶବରେ ଜନନୀଙ୍କ ମୁଖରେ ଏ ଚଉତିଶାର କେତେକ ପଦ ଶୁଣିଅଛୁଁ ଓ ସେହି ଦିନୁ ଏହାର ମାଧୁରୀର ଐନ୍ଦ୍ରଜାଲ ପ୍ରଭାବ ଆମ୍ଭ ମନକୁ ଅଧିକାର କରିଥିଲା । କବି ଗୋପୀନାଥ ବିଷୟ ଜାଣିବାର ଅବକାଶ ହୋଇନାହିଁ ଅଥବା ତାଙ୍କର କୌଣସି ଗ୍ରନ୍ଥ ଏବେଯାଏ ହସ୍ତଗତ ହୋଇ ନାହିଁ । କିନ୍ତୁ ମଥୁରାବିଜେ ଚଉତିଶା ତାଙ୍କୁ ଯେଉଁ ଯଶର ଅଧିକାରୀ କରିଅଛି ତାହା ଅକ୍ଷୟ ଓ ମୃତ୍ୟୁଞ୍ଜୟ ।

କହନ୍ତି କୃଷ୍ଣଚନ୍ଦ୍ର ରାଧିକା ପାଶ
କଂସ-ଡାକରେ ଆସି ଗୋପେ ପ୍ରବେଶ ଗୋ ।
କାଲି ମଥୁରା ଯିବୁଁ ଶୁଣ ଟି ସଖି !
କରିବ ନାହିଁ ଚିନ୍ତା ଆମ୍ଭ ନ ଦେଖି ଗୋ । ୧ ।

୧—* ଶୁଣ ସୁମୁଖି ! ( ପା )।

ଖର ନିଶ୍ୱାସ କ୍ରୋଧେ ବୋଲନ୍ତି ରାଧା
ଖଣ୍ଡିବ କେହୁ ଆମ୍ଭ କନ୍ଦର୍ପବାଧା ହେ ।
ଖିଳବ୍ରହ୍ମାଣ୍ଡନାଥ ! ମଥୁରା ଯିବ
ଖଟାଇଥିଲୁଁ ପଦ୍ମପାଦରେ ଜୀବ ହେ । ୨ ।

ଗୋପାଳ-ପୋଷ୍ୟେ ଥିବେ ଆମ୍ଭ ସଙ୍ଗର ।
ଗଜଗମନି ! ମନେ ଆନ ନ ଧର ଗୋ ।
ଗରବ କର କଂସ ଦୂତ ପେଷିଛି ।
ଗୋପରୁ କୃଷ୍ଣଚନ୍ଦ୍ର ଆଣ ବୋଲିଛି ଗୋ । ୩ ।

ଘୋର ଅନେକ ତପେ ତୁମ୍ଭଙ୍କୁ ପାଇଲୁଁ ।
ଘେନଣ ରାଜ ଦବା ବଞ୍ଚୁଣଥିଲୁଁ ହେ
ଘେନି ଯାଉଛି ଗୋପନଗରୁ ଦିଶ
ଘୋର ସଙ୍କଟୁ କେହୁ କରିବ ପାର ହେ । ୪ ।

ନନ୍ଦନନ୍ଦନ କହେ ଶୁଣରେ ସଖି !
ନଗ୍ର ମଥୁରା ବାରେ ଆସିବୁଁ ଦେଖି ଗୋ
ନାହିଁ ନ କର ତୁମ୍ଭେ ଯୁବତୀବର !
ନିଶ୍ଚେ ଯାଇ ଆସିବୁଁ ସତ୍ୟ ଆମ୍ଭର ଗୋ । ୫ ।

ଚତୁରୀ ରାଧା କହେ ଅକ୍ରୂର ଯାଉ
ଚକ୍ରଧର ନଇଲେ ରାଜାକୁ କହୁ ହେ
ଚକ୍ର-ବଚନେ ଯେବେ କରିବ କୋପ
ଚକ୍ର ସମସ୍ତେ ଛାଡ଼ିଯିବା ଏ ଗୋପ ହେ । ୬ ।

୨—୪ ଝଟାଇଥିଲୁଁ ( କ ) । ୩—୪ ଘନକୃଷ୍ଣ ଆଣ ବୋଲୁଛି ଗୋ । ( ଖ )
୪—୧ ତେବେ ପାଇଲୁ (ଗ) ୪—୨ ନିତ୍ୟ ମଦନ୍ନର ( କ ) ।

ଛଳେ ବୃଷ୍ଣିଙ୍କ ସୁତ ଅସୁନ୍ତି ବାନ୍ଧି
ଛଦ୍ମନକଥା ସଖି ! କହ କିପାଇଁ ଗୋ
ଛାଡ଼ ବିମନ ମନେ ଆନ ନ ଧର
ଛାଡ଼ନ୍ତି ଶସ୍ତ୍ର ଯାକୁ ସଂଗ୍ରାମେ ସୁର ଗୋ । ୭ ।

ଜଗତବନ୍ଧୁ ! ତୁମ୍ଭେ ଯଶୋଦାସୁତ
ଯାମଳା ବନ୍ଧା ଅର୍ଦ୍ଧା କଲ ନିପାତ ହେ
ଜୀବନ-ତୃଣବନ ଅଗ୍ନି ଦହୁଛି
ଜାଣି ଅଛିଲୁ ଫଳ ଆନ ନେଉଛ ହେ । ୮ ।

ଝର ଝର ନୟନ ବହଇ ନୀର
ଝୁରୁଛନ୍ତି ପିତା ମାତା ଅମ୍ଭର ଗୋ
ଝଗଡ଼ା କର ଦୂତ କଂସ ପେଷିଛି
ଝିମିଷେ ନ ଭୁଞ୍ଜାଇ ଥଣ ବୋଲୁଛି ଗୋ । ୯ ।

ଞାଟରବର-ଶିରୋମଣି ମୁରାରି !
ଞଷ୍ଟେ ପଡ଼ିଲେ ମନେ ମଥୁରାନାଥ ହେ
ଞାଗରୀ ସଙ୍ଗ ପାଇ, ଅମ୍ଭଙ୍କୁ ମୂର୍ତ୍ତି ।
ଞମିଷ କୋଟି ଯୁଗ ପ୍ରାପ୍ତେ ମନ୍ତ୍ରୁଛି ହେ । ୧୦ ।

ଟଙ୍କଧର ଜାଣନ୍ତି ଅମ୍ଭର ମନ
ଟାଳ ବିଯାତା ଆଣି କଲଇ ଭନ୍ନ ଗୋ
ଟାଣ ଯେ କହୁ ନୁହେ ସ୍ତ୍ରୀଜା-ହୃଦକୁ
ଟିକାଏ ମୂର୍ତ୍ତି ନୁହେ ତୁମ୍ଭମାନଙ୍କୁ ଗୋ । ୧୧ ।

୭—୩ ଅନ୍ୟ ନ ଧର (ଖ) । ୮—୩ । ୪ ଗ ପୋଥିରେ ୪ । ୩ କ୍ଷୁଦ୍ର ଫଠୋ । ୮—୪ ଅନ୍ୟ ନେଉଛ ହେ । (ଙ) ୯—୪ ଭମକୁଞ୍ଜ ଅଣ (ଚ) । ୧୦—୩ ନାଗରୀ ସଙ୍ଗେ ଥିବ (ଢ) । ୧୧—୪ ମନ ମୂର୍ତ୍ତି ଥିବା ଅମ୍ଭଙ୍କ (ଘ)

ଠାକୁର ନନ୍ଦସୁତ ଗୋପେ ବୋଲାଅ
ଠା'ର ଗୋପୀଙ୍କି କୁଞ୍ଜବନକୁ ନଅ ହେ
ଠାବ କରବ କେହ୍ନେ ତୁମ୍ଭ ଗୁଣ
ଠିକେ ଶୋଷିଲ ତୁମ୍ଭେ ପୂତନା ପ୍ରାଣ ହେ । ୧୨ ।

ଡମ୍ବରୁଧର-ରିପୁ-ଜନକ ଭଣି
ଡର ହୃଦରୁ ଛାଡ଼ ପ୍ରାଣମିତଣି ! ଗୋ
ଡରିଉଥିଲ ଇନ୍ଦ୍ର ହେଲେ କଟେଲେଁ
ଡେଉଁ କାଳନ୍ଦୀଜଳେ କାଳୀ ମର୍ଦ୍ଦିଲେଁ ଗୋ ।୧୩।

ଢୋକିଲୁଁ ବିଷ ଅମ୍ଭେ ତୁମ୍ଭ ବିହୁନେ
ଢାଳେ ନିର୍ଦ୍ଦୟୀ କରି ଯିବ କେମନେ ହେ ।
ଢଳ ଯେ ନାଚୁଥାଅ ଗୋପୀଙ୍କ ମେଳେ
ଢାଳେ ମୂର୍ଚ୍ଛିଲୁଁ କାହିଁ ଏ ପ୍ରାଣ ଥିଲେ ହେ ।୧୪।

ଅଣି ବିଧାତା କଲା ଗୋପରେ ଜାତ
ଅଣି ତୁମ୍ଭ ଅମ୍ଭନ୍ତ କଲା ଏକତ୍ର ଗୋ
ଏଣୀନୟନ ! ମନେ ଆନ ନ ଧର
ଅଣଆୟତ୍ତ ସଖି ! ହେଲା ଅମ୍ଭର ଗୋ । ୧୫ ।

ତୁମ୍ଭର ପାଇଁ ଅମ୍ଭେ ତପ ସାଧିଲୁଁ
ତୁରତେ ହର ପୂଜି ବର ମାଗିଲୁଁ ହେ
ତକ୍ଷଣେ ଉମାକାନ୍ତ ପ୍ରସନ୍ନ ହୋଇ
ତ୍ରୈଲୋକ୍ୟ-ନାଥ ଗଲେ ଏ ବର ଦେଇ ହେ ।୧୬।

୧୨—୪ ଠିକେ ଶୋଷିଲ ପ୍ରଭୁ (ଗ) । ୧୪—୪ ଢାଳନୟନେ ତୁମ୍ଭେ ମୂର୍ଚ୍ଛି ଥିବେ (ଚ) । ୧୫—୨ ତୁମ୍ଭ ଅମ୍ଭଙ୍କୁ (ଢ) ୧୬—୩ ତକ୍ଷଣେ ବିଶ୍ୱନାଥ (ଢ) ।

ଥାନ ଛାଡ଼ିଣ ଯିବୁଁ ମଥୁରାପୁର
ଥିବ କି ଆମ୍ଭ କଥା ତୁମ୍ଭ ମନର ଗୋ
ଥିବ କି ଆମ୍ଭ ମନ ତୁମ୍ଭର ତହିଁ
ଥିଲା ପର୍ଯ୍ୟନ୍ତେ ମଣୁଥିବ କି ସହି ଗୋ । ୧୭ ।

ଦୀନଜନଙ୍କ ବନ୍ଧୁ ! ଦୁଃଖୀ-ସୋଦର
ଦଶଦ୍ରଲୋକନାଥ ପୁରୁଷବର ହେ
ଦୟା ତେଜିବ ତୁମ୍ଭେ ଗୋପ-ଗୋପୀଙ୍କି
ଦନ ବସ୍ତୁରୁ କାହା ଘେନ ଏଣିକି ହେ । ୧୮ ।

ଧରଣୀଧର କହେ ଶୁଣ ରେ ସଖି !
ଧନ୍ୟ ଉଦ୍ଧବ ଯାହା ଅସିବୁଁ ଦେଖି ଗୋ
ଧରୁଛ ମନେ କପାଁ ବିମନ ତୁମ୍ଭେ
ଧାଉଁକାରେ ଯାଇଣ ଅସିବୁଁ ଅମ୍ଭେ ଗୋ । ୧୯ ।

ନନ୍ଦନନ୍ଦନ ଅହେ ଅମ୍ଭ ପରାଣ !
ନଷ୍ଟେ ନ ଆସ ତୁମ୍ଭେ ଶ୍ରୀକୃଷ୍ଣ ଶୁଣ ହେ
ନୂଅବୟସୀ ଅମ୍ଭେ ଗୋପିକାଜନ
ନର୍ମାଣୀ କରଯିବ ମଧୁସୂଦନ ହେ । ୨୦ ।

୧୭—୪ ଥିବ ପର୍ଯ୍ୟନ୍ତେ ମଣି ଥିବକି ଗୋହ ଗୋ ( ଖ ) । ଥିବକି ସଖି ତୁମ୍ଭେ ଅମ୍ଭକୁ ଥୁଆଇ ଗୋ ( ଗ ) । ୧୮—୩ ଦୟା ଛାଡ଼ିଲ କେମ୍ଭେ ( ଖ ) ।
୨୦—ନାହିଁତେ ଦାଣ ଛାଡ଼ ଅମ୍ଭର ପ୍ରାଣ । ନର୍ମଣୀ କରିଯିବ ନନ୍ଦ ନନ୍ଦନ ହେ ।
ନୂଅବୟସୀ ଅମ୍ଭେ ଏ ଗୋପୀଜନ । ନଷ୍ଟପ୍ରେ ନ ଛାଡ଼ିବ ମଧୁସୂଦନ ହେ । (ଖ)
ନାହିଁତେ ଦାଉଦ୍ରୁ ଦହୁଛି ପ୍ରାଣ । ନଷ୍ଟେ ନଭଲେ ତୁମ୍ଭେ ଶ୍ରୀବତ୍ସ ଲାଞ୍ଛ ହେ
ନୂଅବୟସୀ ଅମ୍ଭେ ଗୋପିକା ଜନ । ନରଣ କରିଯିବ ମଧୁସୂଦନ ହେ । (ଚ)

ପରମାନନ୍ଦ କହେ ଶୁଣ ରେ ସଖି !
ପଦ୍ମ ହେଜବ କାହିଁ ମଧୁପ ପକ୍ଷୀ ଗୋ ।
ପାଇବୁଁ ଭଲ ଠାବ ରହିବୁଁ ଆମ୍ଭେ ।
ପ୍ରଭେ ଏମନ୍ତ ସଖି ! ମଣ କି ତୁମ୍ଭେ ଗୋ । ୨୧ ।

ଫେଡ଼ି ଦୁଃଖସାଗରେ ଆମ୍ଭଙ୍କୁ ଦେବ
ଫୁଲଶା ହୋଇ ମଥୁପୁରେ ରହିବ ହେ ।
ଫଳିଲା କର୍ମ-ଫଳ ଏବେ ଆମ୍ଭର
ଫାନ୍ଦେ ପକାଇ ଯିବ ଜଶୁଦୋଦର ହେ । ୨୨ ।

ବଂଶୀବଦନ ବନମାଳୀ ବଗ୍ରତ
ବ୍ରଜଯୁବତୀ ସର୍ବେ ମିଳ ସେଠାର ଯେ ।
ବୋଲନ୍ତି କୃଷ୍ଣଚନ୍ଦ୍ର ଗୋପୀଙ୍କି ଚାହିଁ
ବୋଧ ଅକ୍ରୂର ତୁମ୍ଭେ ସମସ୍ତେ ଯାଅଂ ଗୋ । ୨୩ ।

ଭାବରେ ଯୋଗୀଜନେ ଭେଟି ନ ପାଇ
ଭାବରେ ବଶ କଲେ ଗୋପର ଘୋଷ ଯେ
ଭବାନୀ-ପତିରପୂଜିତ-ଚରଣ
ଭାବେଣ ଗୋପୀନାଥ ପଦେ ଶରଣ ଯେ । ୨୪ ।

ମାୟାଧରଙ୍କ ଚହ୍ନିଁ ଏସନ ଶୁଣି
ମୋହ ଦେଇ ଉଠିଲେ ବ୍ରଜତରୁଣୀ ଯେ
ମୋହନ ମୋହିନୀର ଧରଣୀ କର
ମିଳିଲେ ସର୍ବ ଗୋପୀ ନନ୍ଦ ମନ୍ଦର ଯେ । ୨୫ ।

୨୧— ୪ ପ୍ରତକ୍ଷେ ନଟେଜ କପଁ ଧରିଛ ତୁମ୍ଭେ ଗୋ (ଗ)
୨୨—୧ ପାଇ (ଖ, ଗ) ୨୨—୨ ପୁତ୍ରଣା (ଖ, ଟ) ମଥୁରାବରେ ଥିବ (ଙ)
୨୫—୨ ମନ୍ତ୍ର ଚଳ୍ପା ଛଡ଼ିଲେ ସର୍ବତରୁଣୀ (ଗ)

ଯଶୋଦା ଆଗେ ଗୋପୀ କାନ୍ଦଣି କହି
ଯାହା ଦେଖିଣ ଯିବେ ତୁମ୍ଭ ତନଇ ଗୋ
ଯାଉ ଜୀବନ ମଣ୍ଟି ଲୋଡ଼ୁ ଏ ପିଣ୍ଡ
ଯାନ ଭାଙ୍ଗି ଛେଚରୁ ଅକ୍ରୂର ମୁଣ୍ଡ ଗୋ । ୨୬ ।

ରାଜୀବନେତ୍ର ହସି ଗୋପୀଙ୍କି କହି
ରାଜା-ଦୋରେଦ୍ଧା ହେଲେ ରାଜ୍ୟ ନ ଥାଇ ଗୋ
ରାଜା-ଦୂତଙ୍କୁ ତୁମ୍ଭେ ଅମ୍ଭଙ୍କୁ ଦେବ
ରାଜ୍ୟ ନଷ୍ଟି ହେ ଗୋପୀ ଗୋପରେ ଥିବ ଗୋ । ୨୭ ।

ଲାଗିଲା ମାୟା ସର୍ବ ଗୋପୀଜନଙ୍କୁ
ନୟନ ରୋଧି ଏବେ ଶୁନ୍ଦେଁ କୃଷ୍ଣଙ୍କୁ ଯେ
ଲୋକ ବଢ଼ା ଶବ୍ଦଇ ନନ୍ଦ ମନ୍ଦିର
ଲାବଣ୍ୟନିଧି ଯିବେ ମଥୁରାପୁର ଯେ । ୨୮ ।

ବରଜବାଳୀ ସର୍ବେ ମଙ୍ଗଳ କରି
ବନ୍ଦାନ୍ତ ଅର୍ଘ୍ୟ ଘେନ ଶ୍ରୀ ବନମାଳୀ ଯେ
ବେଣୁ ବଇଁଶି କରେ ବ୍ରଜକୁମାରେ
ବସିଲେ ଯାଇଁ କୃଷ୍ଣ ରଥ ଉପରେ ଯେ । ୨୯ ।

ଶ୍ରୀକୃଷ୍ଣ ଆଜ୍ଞାଦେଲେ ଅକ୍ରୂର ବସ
ଶୀଘ୍ର ହୋଇଣ ଯିବା ମଥୁରା ଦେଶ ଯେ
ଶିରେ ଘେନିଣ ଆଜ୍ଞା ବାହିଲା ରଥ
ସୟୀରେ ଯମୁନାରେ ମିଳ ତୁରତ ଯେ । ୩୦ ।

୨୭—୧ ସର୍ବ ଗୋପୀ କହୁ (କ) । ୨୮—୩ ନନ୍ଦକୁ ଥରେ ବନ୍ଧୁ ଲୋକ ଗହଳ ( ଖ ) । ୨୯—୩ ଗୋପ କୁମରେ ( ଗ ) ।

ସ୍ନାହାନ ଯମୁନାରେ ଅକ୍ରୂର ସାରୁ
ଶ୍ରୀକୃଷ୍ଣ-ମୁଖ ଦେଖି ଦୁରତ ହର ଯେ
ଶୀଘ୍ରେ ବାହିଲେ ରଥ ମଥୁରାପୁର ।
ସାନନ୍ଦେ ଦେଖୁଛନ୍ତି ସ୍ୱର୍ଗ ଅମର ଯେ । ୩୧ ।

ସାଠି ରଜକ ବଧେ ମାଲୀ ଦୁଆରେ
ସଜ ଘେଇଣ ମାଳା ଦେଲା କୃଷ୍ଣରେ ଯେ
ସଜ୍ଜ ପେଡ଼ାରୁ ଗନ୍ଧ କୁବୁଜୀ ଦେଲା
ଶ୍ୟାମସୁନ୍ଦର କର ଲଗି ଚରଣେ ଯେ । ୩୨ ।

ହରଷେ ହର ଧନୁ ଭୋଳ ପଟନ୍ତେ
ହତ କରଣ ଗଜ ମାଲ ମାଇଲେ ଯେ
ହରି ଯେ ରଙ୍ଗ ସଭା ତଳେ ପ୍ରବେଶ
ହରିଙ୍କି ଦେଖି କଂସ ହେଲା ବିନାଶ ଯେ । ୩୩ ।

ଛଡ଼ାଲା ଚିନ୍ତା ମାତା ପିତାଙ୍କ ମନ
ଛତ୍ରେ ଉଗ୍ରସେନେ କଲେ ରାଜନ ହେ
କ୍ଷମାସାଗର କୃଷ୍ଣ ପଦ୍ମଚରଣ
ଛତ୍ରେ ଗୋପୀନାଥ ପଶେ ଶରଣ ହେ । ୩୪ ।



୩୩—୩ ହରଷେ ରଙ୍ଗ ସଭା ମଧ୍ୟେ ପ୍ରବେଶ (କ) । ୩୪—୨ ଛତ୍ରେ ଭଞ୍ଜେ ହେଲେ (ଖ) ।

# ଦୀନବନ୍ଧୁ ଚଉତିଶା ।

ଦୀନବନ୍ଧୁ ଚଉତିଶାରେ କରୁଣ ରସର ଲହରୀ ଅନୁପ୍ରାସ ଅନନ୍ୟ-ସାଧାରଣ । କବି କୃଷ୍ଣଦାସଙ୍କର ଅନ୍ୟ କୌଣସି ଦୁଇ ଗୋଟି ଗଣ୍ଡ କବିତା ମଧ୍ୟରେ ସ୍ୱଙ୍ଗ ସେ ସେ ଠିକ୍ କରେ ଏ ପର୍ଯ୍ୟନ୍ତ ନିରୂପିତ ହୋଇ ପାରି ନାହିଁ । କିନ୍ତୁ କବିଙ୍କ ଲେଖନୀ ବଡ ଶକ୍ତିଶାଳୀ । ଦୀନବନ୍ଧୁ ଚଉତିଶା ଶ୍ରବଣ କରି କେତେ ଧର୍ମଶୀଳା ଭକ୍ତିମତୀ ରମଣୀ ଗଦଗଦ୍ ନମ୍ର ଓ ଲୁହକଣ୍ଠ ହେବାର ଆମ୍ଭେ ଦେଖିଅଛୁଁ ଓ ଯେତେଥର ଦୀନବନ୍ଧୁ ଚଉତିଶା ପଢ଼ିଅଛୁଁ ସେତେଥର ତାହା ଆମ୍ଭକୁ ନୂତନ ବୋଧ ହୋଇଅଛି । ଯାହା ଏତେ ସୁନ୍ଦର ତାର ଶବ୍ଦାର୍ଥ ଶେଷ ନାହିଁ ?

କରନ୍ତି ଭାଳେଣି ସର୍ବ ଗୋପାଙ୍ଗନା ମିଳି
କଂସ ଦୂତ ସଙ୍ଗତେ ବିଜୟେ ବନମାଳୀ
ଦୀନବନ୍ଧୁ ହେ !
କରୁଣି କରନ୍ତୁ
କଲେଣି ମଥୁରା ବିଜେ ପ୍ରାଣ ବଯକ୍ତିରୁଁ । ୧ ।

ଖାଇବାର ଶଷ ପ୍ରାୟେ ନ ରୁଚେ ସଦନ
ଖେଳାଇ ହସାଇ ଅମ୍ଭେ ବଞ୍ଚୁଥିଲୁଁ ଦିନ
ଦୀନବନ୍ଧୁ ହେ !
ଘଣେ ନ ବର୍ତ୍ତିବୁ
ଝଲ ଉପୁଜିଲା କଥା ଲକ୍ଷା ଲୁହାଇବୁ । ୨ ।

ଗୁପତ ହୋଇ ଅଇଲ ଗୋପ ଭୁବନକୁ
ଗରଳ ଅମୀୟ ବୋଲି ଭୁଞ୍ଜାଇ ଆମ୍ଭଙ୍କୁ
ଦୀନବନ୍ଧୁ ହେ !
ଗଲ୍ଲଛି ଜୀବନ
ଘୋର ଧରୁ ରଖିଅଛ ଏ ଗୋପ ଭୁବନ । ୩ ।

ଘଟ ଥାପି ନୀପ ମୂଳେ ଜଗିଥାଅ ବାଟ
ଘୋର କୁଞ୍ଜେ ବେଣୁ ବାଇ କରାଇ ଉଚ୍ଚାଟ
ଦୀନବନ୍ଧୁ ହେ !
ଘର ନ ମଣିଲୁ
ଘର ବର ଦୂସ୍ତ ଚେନ୍ନା ତୁମ୍ଭରେ ମଜ୍ଜିଲୁଁ । ୪ ।

ନିର୍ମଳ ନୋହିବ ଅଙ୍କୁ ସୁହାଗୀ କାଳିନ୍ଦୀ
ନାଚିଲ କାଳୀୟ ଶିରେ ପଦ୍ମପାଦ ଛନ୍ଦି
ଦୀନବନ୍ଧୁ ହେ !
ନ ଯାଇ ବିଘୋର
ନିକୁଞ୍ଜ ବନେରେ ନେଇ ଯେତେ ପ୍ରୀତି କର । ୫ ।

ଚରଣ ଲାଗନ୍ତେ ଭଗ୍ନ ହୋଇଲା ଶକଟ
ଚୂର ଏ କଂସ ଉଗର କରାନ୍ତୁ ମୂହାଁଟ
ଦୀନବନ୍ଧୁ ହେ !
ଚିହ୍ନିଥିବ ତୁମ୍ଭେ
ଚିପିବୁ ଅକ୍ରୂର ମୁଣ୍ଡ ଖିଆ ଦନ୍ତେ ଅମ୍ଭେ । ୬ ।

ଛଳ ପ୍ରାୟେ ହୋଇ ସେବ ଥାଉଁ ଦିବାରାତ
ଛାଡ଼ି କି ଅମ୍ଭଙ୍କୁ ତୁମ୍ଭେ ଯିବ ଶିରୀପତି
ଦୀନବନ୍ଧୁ ହେ !
ଛାଡ଼ ଏ ବିଚାର
କ୍ଷମାଶୀଳ ପ୍ରଭୁ ହୋଇ କରୁଛ ନିଷ୍ଠୁର । ୭ ।

ଜୀବର ଜୀବନ ତୁମ୍ଭେ ଯଦୁକୁଳ ଚନ୍ଦ
ଜାଣିଲୁଁ ଗୋପିକା ଜନେ ଲଗାଇଲ ଫାନ୍ଦ

ଦୀନବନ୍ଧୁ ହେ !
ଯିବ ମଧୁପୁର
ଯୋଇ ଢାଳ ମଣବୁଛ ତୁମ୍ଭର ଆଗର । ୮ ।
ଝୁରଣ ମରବୁଁ ମୁଖ ନ ଚାହିଁ ଝେମିତ୍ତେ
ଝୁଷାଇ କେମନ୍ତେ ତୁମ୍ଭେ ବହିଲନି ରଥେ
ଦୀନବନ୍ଧୁ ହେ !
ଝୁମନ୍ତେକ ରହ
ଝାଡିବୁଁ କାଳନ୍ଦୀ-ଜଳେ ଦେଖିକରି ଯାଅ । ୯ ।

ଞକୁଞ୍ଜ ଭୁବନେ ନେଇ କୁଞ୍ଜଲତା ତଳେ
ଞଯୃନ ସଙ୍ଗେଜେ ଯାନା ଠାରଛ ପୁସରେ
ଦୀନବନ୍ଧୁ ହେ !
(ନେଇ) ବସାଇ ଲତାରେ
ଜନ୍ମିଲ ଅଧରୁ ଯେ ଅମୀୟ ଧାର ଝରେ । ୧୦ ।
ଟସ୍ତର ହୋଇ ଅଇଲ ଗୋପ ଭୁବନକୁ
ଟାଣପଣ କହୁଅଛ ଯିବାର ବେଳକୁ
ଦୀନବନ୍ଧୁ ହେ !
ଟାଣ ଯେ ନ କହ
ଟେକିଣ୍ଟି ସ୍ତନରେ ଦନେ ସେ କଥା ଚତୁଅ । ୧୧ ।
ଠକିଲ ଆମ୍ଭଙ୍କୁ ତୁମ୍ଭେ ଦେଇ ପ୍ରୀତିଭାବ
ଠାବ ଭଲ ପାଇ ଏବେ ମଧୁପୁର ଯିବ
ଦୀନବନ୍ଧୁ ହେ !
ଠକିଲ ଅମ୍ଭଙ୍କୁ
ଠିକେ ଅରକ୍ଷିତ କୃଷ୍ଣ ବଳଇ ତୁମ୍ଭଙ୍କୁ । ୧୨ ।

ଡରୁଥାଉଁ ଅମ୍ଭେ ତୁମ୍ଭେ ଗଲେ ବୃନ୍ଦାବନ
ଢେରଥାଉଁ ଶ୍ରବଣ ନ ଶୁଣି ବେଣୁସ୍ୱନ
ଦୀନବନ୍ଧୁ ହେ !
ଡକା ତ କରୁଛ
ଢାଳରେ ବସାଇ ମୂଳ କଟୁଚ କାଟୁଛ । ୧୩ ।

ଣାଳି ଥାଅ ତୂଳ ଗୋଷ୍ଠ ତଥା ସଲଖକୁ
ଣାଳ ଗୃହିଁବାର ଭାବେ ଜଣିଛ ଅମ୍ଭଙ୍କୁ
ଦୀନବନ୍ଧୁ ହେ !
ଣାଳ ଗୃହିଁବାର
ଣାଳେ ଫୁଟି ରହିଅଛି ମରମେ ଅମ୍ଭର । ୧୪ ।

ଅଶେଷ ମହିମା ତୁମ୍ଭ ତୁମ୍ଭେ ଯିବା ଜାଣ
ଅଟେ ଲୋକ୍ତ ପୁତନାର ଶୋଷିଲ ପରାଣ
ଦୀନବନ୍ଧୁ ହେ !
ଅଡଶୋକ ନୋହୁ
ଅନ୍ତର ଲେଉଟି ପଛେ ଗୋପପୁରୁ ଯାଉ । ୧୫ ।

ତ୍ରିଲୋଚନ-ଶମ୍ଭୁ-ଶର ଦହଇ ଅମ୍ଭଙ୍କୁ
ତୁମ୍ଭେ ଭଜେ କରୁଅଛ ମଧୁବନକୁ
ଦୀନବନ୍ଧୁ ହେ !
ତନୁ ଏ ତୁମ୍ଭର
ଦାହ କର ତୁମ୍ଭେ ବାରେ ଯଶୋଦା କୁମର । ୧୬ ।

ଥିବିର ନୋହିବ ମନ ଦେଖିଲେହେଁ ଅଦୃଷ୍ଟ
ଥପ୍ପେ ଥିଭ ନ କରିଲ ଦଉଛ ବଣାସ

ଦୀନବନ୍ଧୁ ହେ !
ଥିର ନୋହେ ମନ
ଥିର ପାଶେ ବାନ୍ଧନେଲ ଗୋପୀଙ୍କ ଜୀବନ । ୧୭ ।
ଦିନକୁ ଦିନ ଦୁର୍ଲଭ ତୁମ୍ଭ ଦରଶନ
ଦେହ ଯାକ ଝର୍ପା ଆମ୍ଭ ନୋହିଲା ଲୋଚନ
ଦୀନବନ୍ଧୁ ହେ !
ଦେଖିଲୁ ତୁମ୍ଭଙ୍କୁ
ଦେଖି ଦେଖି ଅଭାବ ତ କରୁଛ ଆମ୍ଭଙ୍କୁ । ୧୮ ।
ଧରଣ ଚବୁକ କଟେ ଦେଇଣ ଚୁମ୍ବନ
ଧୀରେଣ କବରୀ ବାନ୍ଧ କର ଆଲିଙ୍ଗନ
ଦୀନବନ୍ଧୁ ହେ !
ଧରଅଛୁଁ ତାହା
ଧ୍ରୁବ କର ବୋଲିଛ ଗୋପୀଙ୍କି ଅମ୍ଭେ ସାନ୍ଧା ।୧୯।
ନୟନରେ ଦେଖିଁ ଦେଖିଁ କର ଭିନ୍ନ ଭିନ୍ନ
ନହିଇ ସ୍ୱଅର୍ଥ ନଷ୍ଟେଁ ସୁଜନ ବଚନ
ଦୀନବନ୍ଧୁ ହେ !
ନୀର ଧରି କରେ
ନୟମ ଯେ କରଅଛ ଯମୁନାର ତୀରେ । ୨୦ ।
ପାର ଯେତେ ନୟମତ ଶକ୍ତ୍ୟେ ମଥୁରୀ
ପିଇଲୁ ନୀର ସଙ୍ଗତେ ବୋଲଣ ମନ୍ତ୍ରସ୍ୱ
ଦୀନବନ୍ଧୁ ହେ !
ପୀରତି ଏମନ୍ତ
ପୋଡ଼ୁ ଏ ସ୍ତ୍ରୀ ସଭାବେ ଝର୍ପା ହେଲୁଁ ନାଥ ।୨୧।

ଯାଇ ପାଶ ଲଗାଇଣ ହୋଇଲୁ ଯରୁଣା
ଯାନ୍ତ ଯାଉଅଛୁ ହୃଦ ଦେଖି ଅକରୁଣା
ଦୀନବନ୍ଧୁ ହେ !
ଯମ ବୋଧେ ମନ
ଯେଉଁ କର ନ କଷ୍ଟ ତ ନ ଯିବା ବଚନ । ୧୨ ।

ଜଣମ୍ବର ଦାମୋଦର ବୋଲଛ ବଚନ
ଜମ୍ବାଧରୀ ଗୋପନାରୀ ଅଟ ମୋ ଜୀବନ
ଦୀନବନ୍ଧୁ ହେ !
ବୋଲ କି ବିଅର୍ଥ
ବୋଇଲେ ଅକ୍ରୂର ରଥ ବାହନେଉ ପଥ । ୧୩ ।

ଭାବ ପ୍ରୀତିରସେ ତୁମ୍ଭେ ଅମ୍ଭଙ୍କୁ କିଣିଲ
ଜାତି ବନ୍ଧୁ ଜାତି ପତି ସବୁ ଛଡ଼ାଇଲ
ଦୀନବନ୍ଧୁ ହେ !
ଭାବ ପୂରିଅଛୁ
ତନେ କୃଷ୍ଣ ଅରକ୍ଷିତ ନ ପାରୁଁ ମୁରୁଛୁ । ୧୪ ।

ମଥୁରାଯାତ୍ରା ଦେଖିବୁଁ ମାମୁଙ୍କର ଆଗ୍ୟାଂ
ମହାରାଜା କଂସ ବୋଲି କେ କରୁ ଅବଗ୍ୟାଂ
ଗୋପୀମାନେ ଗୋ !
ମନଥିରେ ଥିବ
ମଥୁରା ଯାଇଁ ଅଇଲେ ଅମ୍ଭଙ୍କୁ ଦେଖିବ । ୧୫ ।

ଯୁବତୀରତନ ଯେ ଯେ ମଧୁପୁର ବାଳୀ
ଜୀବ ଯରମଙ୍କୁ ଯେତ କରୁଥାନ୍ତୁ କେଳି ।

ଦୀନବନ୍ଧୁ ହେ !
ଯୋଗରେ ରହିଲେ
ଜଣାଇଲେ ଅମ୍ଭ କଥା ନ ଶୁଣିବ ଭଲେ । ୨୭ ।
ରସିକ ସେ ରସକୁ ରସନ୍ତି ପ୍ରାଣସଖି
ରଖିବ କି ବ୍ୟାଧ ଧରି ଉଡ଼ନ୍ତା ପକ୍ଷୀକି
ଗୋପୀମାନେ ଗୋ !
ରସାଇଛି ମନ
ସନ୍ଦ ଦେବା ତୁମ୍ଭ କଥା ଅମ୍ଭଙ୍କୁ କୀର୍ତ୍ତନ । ୨୮ ।
ଲକ୍ଷ୍ୟ କରିଥିବାଯାକ ନୟନରେ ଥିବ
ଲକ୍ଷ୍ୟ ତୁଟିଗଲେ ଭାବ ଅଦୃଶ ହୋଇବ
ଗୋପୀମାନେ ଗୋ !
ଲେଖିଥିବ ଦିନ
ଲେଉଟି ତ ବାରେକ କରିବ ଦରଶନ । ୨୯ ।
ବାସ ଥିଲା ପୁଷ୍ପକୁ ସେ ଭ୍ରମର ଭ୍ରମଇ
ବାସ ନେଇ ପୁଷ୍ପକୁ ଲେଉଟି ନ ଆସଇ
ଦୀନବନ୍ଧୁ ହେ !
ବୁଝିବ ସେଠାରେ
ବନ୍ଦୀ କରି ରଖିଥିବେ କଣ୍ଠାଘ-ଯୁଗରେ । ୩୦ ।
ଶଶ-ଲାଞ୍ଛନ ଭାଜିବ ଦେଖି ତୋ ଶ୍ରୀମୁଖ
ସେ ସ୍ତିରୀ ପାଇବେ ପଦ୍ମପାଦ-ପ୍ରୀତି-ସୁଖ
ଦୀନବନ୍ଧୁ ହେ !
ସେ ସୁଖ ଲଭିଲେ
ଚିବକ୍ତ ଚେରଲ ପ୍ରାଣେ ଜଡ଼ିଥିବ ଗଳେ । ୩୧ ।

ଶୁଣ ପ୍ରିୟେ ପ୍ରାଣସଖି ପ୍ରାଣର ରମଣି
ଶତ୍ରୁହସ୍ତେ ଗତାଗତ ଯେସନେ ସାରେଣୀ
ଗୋପିମାନେ ଗୋ !
ସାକ୍ଷୀ ମାତ୍ର କର
ସେହିମତ ସବୁ କଥା ହୃଦରେ ବିଚାର । ୩୧ ।
ଶ୍ରୀଯ୍ୱାପତି ମଥୁରା ନାରୀଙ୍କ ପତି ହେଲ
ଧୃଷ୍ଟ କର କହୁଅଛୁଁ ଆମ୍ଭଙ୍କୁ ଛାଡ଼ିଲ
ଦୀନବନ୍ଧୁ ହେ !
ସରଳ ସମ୍ପତ୍ତି
ସୁଖ ଏଡ଼ି ଠକ କରି ରଖିଲ ବିପତ୍ତି । ୩୨ ।
ହରଣ ନୟନା ଗୋପାଙ୍ଗନାମାନେ ଶୁଣ
ହେଲେହେଁ ମଥୁରା ତୁମ୍ଭଠାରେ ଥିବ ପ୍ରାଣ
ଗୋପୀମାନେ ଗୋ !
ହୃଦୟ ଆମ୍ଭର
ହରାଇଲେ ତୁମ୍ଭଠାରୁ ନୋହିଛି ବାହାର । ୩୩ ।
କ୍ଷମା-ଜଳ-ନିଧି ଗୋପୀ କହର ପ୍ରସନ୍ନ
ଛଛହେ ଅକ୍ରୂର ସଙ୍ଗେ ମଥୁରା ଗମନ
ଗୋପୀନାଥ ହେ !
କ୍ଷୋଭ ଛାଡ଼ ମନ
ହୃଦ ମଣ୍ଡ କୃଷ୍ଣ ଅରଷିତ ପାଦେ ଧାନ । ୩୪ ।



# ଗୋପଜୀବନ ଚଉତିଶା

ଗୋପଜୀବନ ଚଉତିଶା ଅତି ପ୍ରାଚୀନ । ପାଠକ ପାଠିବା କ୍ଷଣାନ୍ତ ମଧ୍ୟ ତାହାର ସୂଚନା ପାଇବେ । ପୁରାତନ କାଳ ବୃନ୍ଦାବନ ଦାସଙ୍କ ରସବାରିଧିର ଭୌଣୀ ଛାନ୍ଦକୁ ଗୋପଜୀବନ ଚଉତିଶା ବୃତ୍ତରେ ଗାଇବାର ନିର୍ଦ୍ଦେଶ ଅଛି । ଏହି କୃଷ୍ଣ-ପ୍ରେମ ବର୍ଣ୍ଣନ ଗୀତ କେତେକାଳ ଅଗରୁ କେତେ ପ୍ରକାରରେ ଯେ କୃଷ୍ଣ-ଗାଥାକୁ ଜନତାରେ ପ୍ରଚାର କରି ଉଦ୍ବେଗ କରୁଅଛି ତାହାର ଏପରି ପ୍ରମାଣ ଏ ଜନପ୍ରିୟ ସଂଖ୍ୟାବହୁଳ ଏହି ପୁରାତନ ଚଉତିଶାମାନଙ୍କରୁ ବେଶ୍ ମିଳେ ।

କନକ ସୁନ୍ଦର ରଥ ମଧ୍ୟେ ବଲ୍ଲେ ଗୋପୀନାଥ
ଗୋପୀମାନେ ଦେଖିଲେ ତା ଯାଇଁ ।
କଂସଦୂତ ସଙ୍ଗତରେ କାମପାଳଙ୍କୁ ଅବରି
କରିବ ମଥୁରା କଟକାଇ
ହେ ଗୋପଜୀବନ !
କାହା ଭୁଲେ କଲ ଏ ବିଗ୍ରହ
ବକେ ଯେତ୍ରେ ବେଗେ ହୋଇଲ ବାହାର ହେ ।
କହେ କୃଷ୍ଣ ମୃଦୁରସ କୋମଳ କର ପରଶ
ଶୁଣ ତୁମ୍ଭେ କୁରଙ୍ଗଲୋଚନା !
ବ କାର୍ଯ୍ୟେ ମଥୁରା ଯିବୁ ବ ଲାଗେ ଗୋପ ଛାଡ଼ିବୁ
କଳ୍ପ ବୃପଶ୍ରବ ବହୁ ପୁଣି
ଗୋ ଗୋପୀମାନେ !
କାଲି ଗୋପେ ଅକ୍ରୂର ଅଇଲା
କଂସ ଆଜ୍ଞା ବୋଲି ନନ୍ଦଙ୍କୁ କହିଲା । ୧ ।

ଖଳଲୋକଙ୍କର ବୋଲ — କେବେହେଁ ନୁହଇ ଭଲ
ଖିଅନ୍ତି ଅମିୃତ ବୋଲି ବିଷ
ଖେଳ କଉତୁକ ରସ — ଗୋପପୁରେ ଯିସ ଯିସ
ମଥୁରାରେ କରିବ ତା' ଶେଷ
ହେ ଗୋପଜୀବନ !
ଷଣେ ନ ଦେଖିଲେ ତୋ ଶ୍ରୀମୁଖ
ଖମ୍ଭ ପ୍ରତିମା ପ୍ରାୟେକ ମଣୁ ସର୍ବ ସୁଖ ହେ ।

ଖେଦ କଲୁ ତୁମ୍ଭ ତହିଁ — ଖଣ୍ଡିଲୁ ନିମଗ୍ନ ହୋଇ
ଷଣେ ମନ୍ତୁ ନ ପାରୁ ପାସୋରି
ଖେଳିଲେ ଖାଇଲେ ମନେ — ଷନ୍ଦ୍ରୁ ବଛା ରଖୁ ବନେ
ଷଣେ ଷଣେ ଚିତ୍ତେ ତୁମ୍ଭ ଧରି
ଗୋ ଗୋପୀମାନେ !
ଖଳ ଲୋକ ପାରୁଣେ ନ ଥାଉ
ଖେଳେ ଅଙ୍କକୁ ଲୋଚନ ଦାନ ଦେଉ ଗୋ । ୨ ।

ଗିରିଛତ୍ର ବାମେ ଧରି — ରଖିଲ ଗୋପର ଶିକ୍ଷା
ଗଳ୍ପ ସୁରପତି ଗର୍ବ ହାରି
ଗାଢ଼ ଅପମାନ ପାଇ — ଅଛି ସେ ଅମରଷାଇଁ
ଗାଢ଼େ ସେ ଧ୍ୱଂସିବ ଗୋପପୁରୀ
ହେ ଗୋପଜୀବନ !
ଗାଢ଼ପଣ ସରଳ ଅମ୍ବର
ଗାଢ଼େ ନୟନୁ ବହଇ ଅଶ୍ରୁବାରି ହେ ।

ଝ-୭—୭ ଗାଢ଼ପଣ ସରଳ ଅମ୍ବର । ଗାଢ଼େ ନନ୍ଦଙ୍କୁ ବନ୍ଧୁଛି ଜାଉଥାର ।

ଗୋପୀକାଙ୍କ ବୋଲ ଶୁଣି    ଗିରିଧର କହେ ବାଣୀ
ଗତ କଥା ଇନ୍ଦ୍ର ପାସୋରିବ
ଗ୍ୟାଂନ ଙ୍କ ନାହିଁ ତାହାର    ଗଲେ ସେ ମଥୁରା ପୁର
ଲେଉଟି ସେ ଗୋପ ବିଧ୍ୱଂସିବ
ଗୋ ଗୋପୀମାନେ !
ଗାଢ଼ କ୍ରୋଧ କିପାଇଁ କରୁଛ
ଗୋପ ନ ରଖିଲେ ନୋହୁ ନନ୍ଦବତ୍ସ ଗୋ । ୩ ।

ଘର ବାହାର ଅନ୍ଧାର    ଦିଶିଲା ଗୋପ ନଗର
ଚନ୍ଦ୍ରବିନୁ ଯାମିନୀ ଯେସନ
ଘୁଞ୍ଚିଲା ସୁଖ ବିସ୍ତର    ଘୋଟିଲା ଦୁଃଖ ସାଗର
ପଲକେ ବିଚ୍ଛେଦ ଖେଦମନ
ହେ ଗୋପଜୀବନ !
ଘାଣ୍ଟି କଲ ଯେତେ ସୁଖ ଦେଲ
ଘାଟି ଙ୍କ ବିସ୍ତର ପ୍ରେମ ଆରମ୍ଭିଲ ହେ ।

ଘେନ ପ୍ରୀତି କହେ ହରି    ଶୁଣ ଗୋ ବ୍ରଜସୁନ୍ଦରୀ !
ଘଟେ ଅନ୍ତର ତ କିଛି ନାହିଁ
ଘଟାଇଛି ଧାତା ହାକ    ଘୋଟିଛି ଅକ୍ରୂର ଦେଖ
ଘେନି ଯିବ ରାଜା ଆଜ୍ଞା ପାଇ
ଗୋ ଗୋପୀମାନେ !
ଘେନାଇ କହିବୁ ଗୋପ ପତିଁ
ଘଟି ନ ପଡ଼ୁ କଷ୍ଟେ ଥିବ ରହି ଗୋ । ୪ ।

ନ ମଣିଲୁ ବେଦ କୁଳ    ଦେଖି ତୋ ମୁଖକମଳ
ମତ୍ସଜୀବ ପ୍ରାୟେ ବନ୍ଦୀ ହେଲୁ
ନିଶିଦିବା ନିରନ୍ତର    ତୋ ରୂପ ଥାଇ ନଜର
ତୋହ ବିନୁ ଅନ୍ୟ ନ ଭାବିଲୁ
ହେ ଗୋପଜୀବନ !
ନିରାଶ କି କରିବ ଆମ୍ଭଙ୍କୁ
ନେବ କି ଗଲେଣ ଏଥି କେ ତୁମ୍ଭଙ୍କୁ ହେ !
ନିରାଶ ନ କରୁ ଆମ୍ଭେ    ନ ଜାଣିଛ ଗୋପେ ତୁମ୍ଭେ
ନାନାକେଳି ଏହୁ ଗୋପପୁର
ନାଟବାଟିକାୟେ ଗୋପୀ    ଧଇଲୁ ମନର କୋପି
ନ ଧଇଲେ କେ ଥାନ୍ତା ଗୋପର
ହେ ଗୋପୀମାନେ !
କାହିଁ ଗଲା ସୁଖଙ୍କୁ ରଖିଲୁ
ନାନାଦୁଃଖ ଗୋପେ ପାଇଣ ରହିଲୁ ଗୋ । ୫ ।
ସ୍ମର ଯେତେ କଂସତ୍ରାଣ    ବଢାଇଲେ ପୁଣ ପୁଣ
ସ୍ନେହରୂପ ସମସ୍ତେ ଅଇଲେ

---

ନିର୍ମଳ ଚନ୍ଦ୍ରବଦନ    ତ ଦେଖି ମନ ଦେଲୁ
ବଚନେ ତା ନ ହୁଅଇ କହୁ
ନେତ୍ର ସୁଫଳ ହୋଇଲେ    ତୋ ରୂପ ଥୋଇ ହୃଦରେ
ରହିଛୁ ମୃତକ ପ୍ରାୟେ ହୋଇ
ହେ ଗୋପଜୀବନ !
ନିରାଶ କି କରିବ ଆମ୍ଭଙ୍କୁ
ନେବ କି ଜଳେ କେ ଏଥି ବା ତୁମ୍ଭଙ୍କୁ ହେ । ୪ । (ଖ)

୪-୬—୭ ନେବ କିବ ଯିବ ଯେତେବେଳେ । କାହିଁ ରଖିବାକୁ ଏ ମହାନନ୍ଦେ ହେ (ଖ)

ଚତୁର ଜାଣି ଚାହାନ୍ତୁ          ଚତୁରେ ଜାଣି କଲ ହତ

ପ୍ରାଣ ଯେନ ଜଣେହେଁ ନ ଗଲେ

ହେ ଗୋପଜୀବନ !

ଚତୁର କି ତୁମ୍ଭଙ୍କ ଅଙ୍କୁର

ଚତୁ କେମନ୍ତେ ସେ ହରଇ ତୁମ୍ଭର ହେ ।

ଚତୁରେ ଚଢୋଇଣ ଗ୍ରାବ          ଚରଣ ହୋଇଣ ଥିବ

ଚପଲ ହୋଇବ ଚନ୍ଦ୍ରା ଛଡ଼

ଶୂର ସଙ୍ଗେ ମଧୁବନ          ମନ୍ତ୍ରୀ କର ଗମନ

ଚନ୍ଦ୍ର ଦେଖି କଂସର ନଗରୀ

ଗୋ ଗୋପୀମାନେ !

ଚତୁ ଶୁଝ ସଫଳ କୁମର

ଚନ୍ଦ୍ର ଭାବେ ଶ୍ରେଷ୍ଠକଲ ସେ ଅମୃତ ଗୋ । ୨ ।

ଛଡ଼ାଇ ଗୋପ ମୁହାଁସ          ପଶାଇ ମଥୁରା ଦେଶ

ଲେଖ ବଢ଼ାଇଛ ସ୍ନେହେ କରି

ଘର ମାତା ପିତା କୁଳ          ସୁହୃଦ ବନ୍ଧୁ ସକଳ

ବାହାର ହୋଇଛ ମଧୁପୁରୀ

ହେ ଗୋପଜୀବନ !

ଛାଡ଼ିଲେ ତ ଅମ୍ଭେ ନ ଛାଡ଼ିବୁ

ଛାଡ଼ିଗଲେ ଅଗ ପଛେ ଗୋଡ଼ାଇବୁ ହେ ।

୨-୩—ଚତୁର ମଣି (ଗ) ୨-୪—ଗୋଷ୍ଠାଏ କ ଗଲେ (ଖ) ୨-୨—ଚତୁର ଏ ତୁମ୍ଭଠାରୁ (ଖ) ୨-୧—ଛଡ଼ାଇ ଗୋପ ମୁହାଁସ, ମଶାଇ ମଥୁରା ଦେଶ (ଗ) ୨-୨—ବଢାଇବ ଏତେ (ଗ) ୨-୩—ଘର ମାତା ବନ୍ଧୁଗଣ ସକଳ ଛୋଇଲା ଜନ (ଗ) ୨-୪—ହୋଇଲ ଗୁପତ (ଗ) ୨-୨—ବେଢ଼ିବୁ (ଖ)

ଛନ୍ଦ-ଶିରୋମଣି ଶୁଣି ଛଛଳନ୍ନ ନିର୍ମଳ ବାଣୀ

ଛମାଶୀଳ-ହୃଦୟ କନ୍ଦନ୍ତ

ଛର ଯେସନେ ନଦୀଜଳ ଛଛଚନେ ହିଣ୍ଡୁରେ ମେଳ

ଛାଡ଼ି କି ସେ ବାରଣ ହୁଅନ୍ତ

ଗୋ ଗୋପୀମାନେ !

ଛାଡ଼ିବୁ କେମନ୍ତେ ତାତ ମାତ

ଛମେ ଦେଖିଣ ଅପିବୁ ଧନ୍ୟାତ ଗୋ । ୭ ।

ଯଶୋଦାଙ୍କୁ କି ବୋଲିବା କେମନ୍ତେ ମୂର୍ଚ୍ଛିଲେ ଅବା

ଜନ୍ମ କର ପ୍ରେଢ଼େ ଅଯୁଦ୍ଧାଗୀ

ଯେ ଦୋଇବ ଦୋଉ ବୋଲି ନ ରୁହାଇ ଦେଲେ ଛାଢ଼

ଲୁବୁଧନୀ ଗୋପୀ ମନଭାଗୀ

ହେ ଗୋପଜୀବନ !

ଜୀବଦାନ ଦେଇଛ ଅମ୍ଭଙ୍କୁ

ଜୀବଗଲେହେଁ ନ ଛାଡ଼ିବୁ ତୁମ୍ଭଙ୍କୁ ହେ ।

ଜନ୍ମ କର ନନ୍ଦରାଣୀ ଯତନେ ପାଳିଲେ ପୁଣି

ସ୍ୱାଦ୍ଧା କଲେ ବରଜ-ରାଜନ

ଜୀବ ଥିଲେ ଯାଇନାହିଁ ବ୍ରଜେ ପ୍ରୀତି କଲ ଯହୁ

ଯତନେ ତେଜିଲ କୁଳବନ୍ଧି

ଗୋ ଗୋପୀମାନେ !

ଜୀବଗଲେ ନ ଛାଡ଼େ ଯେ ଭାବ

ଯୁଗ ଜଗତେ ଯେ ଭାବ ଅସମ୍ଭବ ଗୋ । ୮ ।

ଝାଡ଼ ଅଗ୍ନି ପାନ କରି　　　　ଜୀବନ ଦେଲ ସବୁରି

ଝଲସ୍ତି ହୃଦରେ ସେ ଚରିତ

ଝଲସ୍ତି ଲୌହ ଯେସନ　　　　ପରଶ ଲାଗି ସୁବର୍ଣ୍ଣ

ତୁମ୍ଭ ଦରଶନ ସେହ୍ନମନ୍ତ

ହେ ଗୋପଜୀବନ !

ଝିମିଝେହେଁ ନ ଯାଇ ମନରୁ

ଝାଡ଼ଜୀବନ ଯେପରି ନଯାଇ ବନରୁ ହେ ।

ନ ଯାଅ ନ ବୋଲ ଗୋପି !　　　　ନୃପ କଂସ ଅଛି କୋପି

ନ ଗଲେ ନାଶ କରିବ ଗୋପ

ନ ଧର ମନେ ବ୍ରମନ　　　　ନୟନେ ଦେଖି ରାଜନ

ନ ଦେଖିଛ କଂସର ସ୍ୱରୂପ

ଗୋ ଗୋପୀମାନେ !

ନ ଆସିବା ପ୍ରାତ୍ୟୈକ ନ୍ୟମଣି

ନଶି ହବା ଦୂର—ଭାବନା ହୃଦୟରେ ଗୁଣ ଗୋ ! ୯-୧୦ ।

ଠାଣ ହୋଇଥିଲୁ ପୂର୍ବେ　　　　ଜାଣନ୍ତି ସକଳ ଦେବେ

ଟଳିଲା ସେ ଗରବ ଆମ୍ଭର

ଠାଣ ଅନଙ୍ଗ ହୋଇବ　　　　ଠାଣେ ଆମ୍ଭଙ୍କୁ ଦହିବ

ଅପଯଶ ହୋଇବ ତୁମ୍ଭର

ହେ ଗୋପଜୀବନ !

ଠାଣପଣ ସରିଲା ଆମ୍ଭର

ଠାଣେ ନୟନ ବର୍ଷୁଛି ଅଶ୍ରୁଧାର ହେ ।

୯-୩—ଝଳିଲେ ପରଶେ ଲୋହ । ଯେସନେ ସୁବର୍ଣ୍ଣ ହୁଅ (ଶ) ୯-୬—୨ ନେବ ଜୀବ ଯିବ ଯେତେବେଳେ । ନାହିଁ ରହିବାକୁ ଏ ମନ୍ଦିରେ ହେ ।

ଟମାଲ ଟକ ଯେ ନାହିଁ        ଟାକ ମନେ ଧର ସହି !

ଟମାଲ ଟକାକେ ମାର ମଲ୍ଲ

ଟମାଲ ଟଳୁଛ ଅଙ୍ଗ        ଟମାଲ ମନ ଅନଙ୍ଗ

ଟାକଇ ଟାକନାଥ ନ ଦେଖି (?)

ଗୋ ଗୋପୀମାନେ !

ଟୀକା ମୋର ଗୁଣ ଘୋଷୁଥିବ

ଟେକି ଧରିଛ ହୃଦରେ ତୁମ୍ଭ ଭାବ ଗୋ । ୧୧ ।

ଠାକୁର ହୋଇ ନିର୍ଦ୍ଦୟା        ଶୁଣିଲବ ନାହିଁ ସେହା

ଠାବ କଲୁ ଅମ୍ଭେ ସେତେବେଳେ

ଠିକେ ପୂତନାର ପ୍ରାଣ        ଖାଇଲ ବିନା ଦୋଷେଣ

କାଳୀକୁ ଦଳିଲ କାଳନ୍ଦୀରେ

ହେ ଗୋପଜୀବନ !

ଠାବ କଲୁ ତୁମ୍ଭର ଚରିତ

ଠିକେ ତହିଁ ବୋଲି ବୋଲୁଛ ସମସ୍ତେ ହେ ।

ଠାକୁର ପ୍ରମାଣ ଅଛି        ଠିକେ ଯେମନ୍ତ ଅମ୍ଭଙ୍କୁ

ଠିକ ଭାବେ ଠକିଲ ଅମ୍ଭଙ୍କୁ

ଠିକେ ଗୋପାଳ-ତନୟ        ଠାଠିକେ ପ୍ରାଣ ହୃଦୟ

ଠେଲେ ହୋଇଲୁ ଠାକୁଙ୍କ ଜୀବନଙ୍କୁ

ଗୋ ଗୋପୀମାନେ !

ଠିକେ ବଟକେ କରୁଅଛ କୋହ

ଠିକେ ଦୁଇ ଗୁର ହୋଇ ତୁମ୍ଭେ ବହ ଗୋ । ୧୨ ।

ଡକାଂକର ଦେଲ ସୁଖ          ବିକଚ କମଳ ମୁଖ
ଦହୁଛି ବିଚ୍ଛେଦ ଅଗ୍ନି ଅନ୍ତ୍ରେ
ଢୋଲେ ମୁଖ ତାଳ ଶୁଣି          ଅହେ ସ୍ୱାମି ! ବୋଲି କହି
ସେଡ଼େ ଭାବ ମୂର୍ଚ୍ଛିବ କେମନ୍ତେ
ହେ ଗୋପଜୀବନ !

ଣାକ ଧେନୁ ଗୋଧନ ବାଛୁଡ଼ା
ଉଙ୍କ ଖାଉ କଂସ କଲ୍ପ କଥା ଲେଡ଼ା ହେ ।
ଢେଇଁ ରଥୁ ବନମାଳୀ          ଗୋପୀଙ୍କ ସନ୍ନିଧେ ମିଳି
ଢାଙ୍କ ଯେବେ ଅରକେ କହନ୍ତି
ଡକାଇଲା କଂସରାଣ          ଧନୁ ଉଚ୍ଛବ କରଣ
ଢୋଲେ ଦେଖି ଆସିବୁ ଢଡ଼ାଛ
ଗୋ ଗୋପୀମାନେ !

ତେଜାଇ କି ଯାଉବୁ ତୁମ୍ଭଙ୍କୁ
ତୋଳେ ତୁମ୍ଭ ବିନୁ ନ ଦେଖୁ ଅନଙ୍କୁ ଗୋ । ୧୩ ।
ଥମ କହୁନାହୁଁ ଅମ୍ଭେ          ଥାଳେ ନ ଆଇବ ତୁମ୍ଭେ
ଥଳଥଳ ଦିଶୁଛି ଯେ କଥା
ଥଳଦଳ ପଦ୍ମଅକ୍ଷି          ଥାଳ ଶୁହିଁ ହୋଉ ସୁଖୀ
ଥାଳେ ସୁଖ ଖଣ୍ଡୁଛି ବିଧାତା
ହେ ଗୋପଜୀବନ !

ଥମ କଥା ଅସିବ ବୋଲୁଛି
ଥାଳେ ତ ଧଉଛି ମଥୁରାପୁର ପଥ ହେ ।

୧୩-୩—ହୋଲେ ପୂର୍ଣ୍ଣ କୁଳ ଦେଶ, ଅହେ ଶ୍ୟାମ କାହ୍ନୁ ଅଛୁ ।

ଢାଳେ ମୂରୁଛ ତୁମ୍ଭଙ୍କ ଯିବୁ ମଥୁରା ପୁରକୁ
ପିତା ମାତା ସୁହୃଦଜନଙ୍କୁ
ଢାଳେ ଚନ୍ଦ୍ର ଅସ୍ତ ହୋଇ ପୁଣି କି ଉଦେ ନୋହଇ
ପାସୋରେ କି କୁମୁଦ ବନକୁ
ଗୋ ଗୋପୀମାନେ !
ଢାଳେହେଁ ତ ମୂରୁଛବୁ ନାହିଁ
ଢାଳେ ତୁମ୍ଭେ ନ ଛାଡ଼ିଲେ ଯିବୁ କାହିଁ ଗୋ । ୧୪ ।

ଅଣଅପରାଧୀ ଗୋପୀ ଅଛ ବଡ଼ ମହାପାପୀ
ଅଣହେଲା ତୁମ୍ଭେ ତ କରୁଛ
ଅଛ ବଳଅଇଲୁଣି ଅପାରହିଁ ବୋଇଲୁଣି
ଅବଧି ଯିବାରେ ବସିଅଛ
ହେ ଗୋପଜୀବନ !
ଅଣି ବହୁ ବିପରୀତ କର୍ମ
ଅତ ପ୍ରୀତି ଯେ ଆମ୍ଭର ଛଡ଼ାଇଲ ହେ ।
ଅଣିମାଦି ଅଇଶ୍ୱର୍ଯ୍ୟ ଲଭିଲେହେଁ ଯହିଁ ଓଜ
ହୋଇବ କି ଆନ ଯେ ଭୁବନ
ଅଣି କର ଯାହା ବାଞ୍ଛ ସକଳ ଗୁଣ ଥୋଇଛ
ଗୋପାଳ ଯେ ଗୋପୀ ବୃନ୍ଦାବନ
ଗୋ ଗୋପୀମାନେ !
ଅଣହେଲା କେମନ୍ତେ କରିବୁ
ଅହନିଶି ତୁମ୍ଭ ଭାବ ଭାବୁଥିବୁ ଗୋ । ୧୫ ।

ତୁମ୍ଭର ମହିମା ଯେତେ    ତୁଣ୍ଡରେ କହିବୁ କେତେ
ତୁଲ୍ୟ ପୁଣ ନାହିଁ ଯେ ଆମ୍ଭର
ତୃପତି ମନ ହୋଇବ    ତୁମ୍ଭରେ କଂସ ମରିବ
ଜୀବନ୍ତ ରହିବ ଜନପୁର
ହେ ଗୋପଜୀବନ !
ତଥ୍ୟ ବାଣୀ ଏ ଅମୃତ ହୋଉ
ତୁମ୍ଭ ଦେଖନ୍ତେ କଂସକୁ କାଳ ନେଉ ।
ତୁମ୍ଭ ବିନୁ ଆମ୍ଭ ମନ    ହୁଅଇ ଅବା ଯେସନ
ବଚନେ ତା ନୁହଇ ନା କହି
ତିଳେକ କୋଟିଏ ଯୁଗ    ପ୍ରାୟେ ମଣୁ ସୁଖ ଭୋଗ
ତୃଷିତ ଚାତକ ପ୍ରାୟେ ହୋଇ
ଗୋ ଗୋପୀମାନେ !
ତହିଁର ମଦନ ଏକା ସାକ୍ଷୀ
ତାକୁ ଆନ ନ ପାରଇ ଦୁଃଖ ଦେଖି   ଗୋ । ୧୬ ।

ଥିବ ସମ୍ପଦନେ ତୁମ୍ଭେ    ଥୟେ ଜାଣିଥିଲୁ ଆମ୍ଭେ
ଥଳେ ଭେଳା ଭସିଲା ଆମ୍ଭର
ଥିରୁ ବୋଲି ଜାଣିଥିଲୁ    ଥାଇ ଧନ ହରାଇଲୁ
ଥିଲ ଅବେଭାର ନ୍ୟୁ ତୁମ୍ଭର
ହେ ଗୋପଜୀବନ !
ଥାପିତ ରହିବ ସ୍ନେହ କୀର୍ତ୍ତି

୧୬-୧—ତୁମ୍ଭେ ତା (ଗ) ୧୬-୨—ଚେତେ ପୁଣ୍ୟ (ଘ) ୧୬-୩—ତନ୍ତୁ ଏ ଅମୃ
ବଚନ ହେ ଜ (ନ) ୧୭-୧—ଥିବ କଥା ସମ୍ପଦକେ, ଗୋପ ଚେନ ମଠକେ (ଗ)
୧୭-୪—ଅତଯଶ ହୋଇବ ତୁମ୍ଭର ହେ (ଢ)

ଥାଉ ଥାଉ କୃଷ୍ଣ ନାଚିଲେ ଗୋପୀଙ୍କ ହେ ।
ଥୋଇ ତୁମ୍ଭ ଚିତ୍ତ ମନ ଯିବୁ ଆସିବୁ ବନ୍ଦନ
ଥିର ଜଳେ ମୀନ ତତ୍ପର
ଥାବର ଥାଉ ନିକଟେ ଅକାଳେ କି ଫୁଲ ଫୁଟେ
ତେସନ ଯେ ଆମ୍ଭେ ତୁମ୍ଭ ତହିଁ

ଗୋ ଗୋପୀମାନେ !
ଥିବା ବୋଲି ମନେ ମଣିଥିବ
ଥିର ନୋହିଲେ କି ଆମ୍ଭଙ୍କୁ ପାଇବ ଗୋ ।। ୧୭ ।
ଦୟାନିଧି ବୋଲ ଶୁଣି ବୋଲନ୍ତି ଗୋପ-ତରୁଣୀ
ଦେଖିବାରୁ ଶୁଣିମା ଅନ୍ତର
ଦାନ୍ଦୋଦର ମୁଖେ ଶୋଭା କିସ ଗୁହିଁବା କହିବା
ଦେଖି ଶୁଣିଥିଲୁ ନିରନ୍ତରେ

ହେ ଗୋପଜୀବନ !
ଦେଉଥିବ ଆଶା ଆସିବାନ୍ତୁ
ଦେହ ଧରିଲୁ ଏ ଦୁଃଖ ସହିବାକୁ ହେ ।
ଦାମୋଦର ଭାବଗ୍ରାହୀ ବୋଲନ୍ତି ଗୋପୀଙ୍କି ଶୁହିଁ
ଦୁଃଖୀ ନୁହ ଦୃଢ଼ କର ଚିତ୍ତ
ଦେଖିଥିଲ ଦୂତ କଥା ଦୃଢ଼ ମନେ କର ଚିନ୍ତା
ଦୃଢ଼ ଭାବ ନିକଟେ ପ୍ରାପତ

ଗୋ ଗୋପୀମାନେ !
ଦମ୍ଭପଣ କପାଇ ଛାଡ଼ନ୍ତୁ
ଦଣ୍ଡେ ନ ଛାଡ଼ୁ ତୁମ୍ଭର ଭାବପକ୍ଷ ଗୋ । ୧୮ ।

ଧର୍ମ୍ୟ ବିଚ୍ଛେଦ ବନ                    ଅନଙ୍ଗ ଦହଇ ପ୍ରାଣ
ଦହଣୀ ହୃଦଙ୍କୁ ପଡ଼ିଅଛୁ
ଧନ୍ୟ ସେ ବ୍ରାହ୍ମଣ ନାମ୍ବା               ଦର୍ଶନେ ଯାହା ଉଚ୍ଛାରୁ
ସେହୁ କଥା ମନରେ ପଡ଼ୁଛୁ
ହେ ଗୋପଜୀବନ !
ଯାହା ନ ସହୁଁଲୁ ଆମ୍ଭ ଠାଏ୍ୟ
ଧରୁଅଛୁ ଦେହ ତୁମ୍ଭ ଯିବା ଯାଏ୍ୟ ହୋ
ଧନ୍ୟ ତୁମ୍ଭେ ଗୋପୀ ଯେତେ   ଧୀରେ ମନ ଦେଲ ମୋତେ
ଧ୍ୱଂସି କ୍ରୋଧ ଲୋଭ ମୋହ ଫାଶ
ଧ୍ୱନି ଶୁଣିଣ ଶ୍ରବଣେ                    ଧାଇଁ ସବୁ ଗୋପୀଜନେ
ଧୀର ଭାବେ ରଚିଲ ମୁହାଁସ ଗୋ
ଗୋପୀମାନେ ·
ଧଇର୍ଯ୍ୟ ଧରୁ ସଦନେ ଥିବ
ଧୀର ହୋଇଥିଲେ ଅଚ୍ୟୁତଙ୍କୁ ପାଇବ ଗୋ । ୯ ।
ନୋହିଲେ ତ ଗୋପୀନାଥ              ଗୋପ କରଣ ଅନାଥ
ପ୍ରେତେ ବେଗେ ହୋଇଲ ବାହାର
ନ ସହଇ କଂସବାଣ                   ନଷ୍ଟେ ଜାଣ ତ ଆପଣ
ଜାଣୁ ଜାଣୁ ବଧ କରେ କେ ଆହାର
ହେ ଗୋପଜୀବନ !
ନରଳୀଳେ ଭାବୁ ଯେ କଥାକୁ
ନେଇଅଛୁ ଯାହା କହୁବୁ କାହାକୁ ହେ !

୯-୧—୨ ଧଇର୍ଯ୍ୟ ବଳ ଅନଳ ବିଚ୍ଛେଦ ଦହୁଛି ପ୍ରାଣ, ହରିଣୀଙ୍କ ଅବଳ କହୁଛି (ଗ) ୧୦-୨—ଯିବ ବୋଲି ହୋଇଲ ବାହାର (ଗ)

ନ କର ଶୋଚନା ଗୋଇ ! ନ ଭାଳ ଗୋ ଅମ୍ଭ ପାଇଁ

ନ କର ସ୍ୱୀକାର ଭୁଲେ ଦ୍ୱନ୍ଦ୍ୱ

ନାଶ କଲୁ ଶୂର ଗଣ ଷଣ୍ଢ ବକା ଅର୍ଘା ତଣ

କୃଷ୍ଣ ଦେଖି ରଖିଥିଲେ ଦ୍ୱନ୍ଦ୍ୱ

ଗୋ ଗୋପୀମାନେ !

ନାହିଁ ଭୟ ଭ୍ରାନ୍ତି ଏ କଥାକୁ

ନଷ୍ଟେ ଅପ୍ରତେ କରୁଛ ଅସିବାକୁ ଗୋ । ୨୦ ।

ପଶିଲେ ମଥୁରାପୁରେ ଗୋପୀ କ ଥିବୁ ମନରେ

ଚତୁର୍ଭୁଜଙ୍କ ବଚନ ଶୁଣିଲେ

ପ୍ରତ୍ୟକ୍ଷେ ମଣିଲୁ ଯାହା ଠାକୁରେ କହିଲେ ତାହା

ପଛେ ପ୍ରତେ ଯିବ ତ ରହିଲେ

ହେ ଗୋପଜୀବନ !

ପରତେ ନ ଯାଇ ମନକୁ

ପୁଣି ପାଲଟି କ ଅସିବ ଗୋପକୁ ହେ

ପତିତପାବନ ଭଲେ ପଦ୍ମମୁଖେ ହସି ବୋଲେ

ଶୁଣ ତୁମ୍ଭେ ପଙ୍କଜଲୋଚନ !

ପାଳିଲ ଗୋପରେ ଥିଲୁ ପରମ ସୁଖ ଲଭିଲୁ

ପାଇଥିଲୁ ଯଶୋଦା ଜନନୀ

ଗୋ ଗୋପୀମାନେ !

ପଶୁଁ ଥରେ ମଥୁରା ନଗରେ

ପଛ ସୁଖ ଲଭ ତୁମ୍ଭେ ଥିବ ଗୋପପୁରେ ଗୋ । ୨୧ ।

ଫଳ ପାଚିଲେ କ ପୁଣ ପାଲଟି ହୋଇବ ତରୁଣ

ଫଳିଲା ଅମ୍ଭ କରମ ଫଳ

ଘାଇ କେତେବେଁ କହିବା ଘରୁଣାମାନ ସହିଲ

ଶୋକ ଘନ ବରଷେ ପ୍ରବଳ—

ହେ ଗୋପଜୀବନ !

ଘାଇ କସ କହିବୁ ତୁମଙ୍କୁ

ଘାଇ ସୁଖ ଦେଇ ଦହିଲ ଅମ୍ଭଙ୍କୁ ହେ

ଘରୁଣା ହୃଅ ମୃଗାକ୍ଷି ! ଘାଇ ଚନ୍ଦ୍ରା ଘଡ଼ ପକ୍ଷି !

ଘୋଘୋଡ଼ାଇ ହୁତାଶନ ଦେଇ

ଘୃରବ ସୁଧା-ଅଧର ଘାଇ ହସ ରସ ଭାବ

ଘାଇ ସୁଧା ମୁଖରେ ସେ ହୋଇ

ଗୋ ଗୋପୀମାନେ !

ଘୃଷବ ହୃଦୟରେ ଚନ୍ଦ୍ରା କଲେ

ଘଲ ନାହିଁ କି ଧଇର୍ଯ୍ୟ ନ ଭଜିଲେ ଗୋ ।୧୧।

ବଡ଼ ଭରସା ତ ଦେଲ ବଡ଼ ବେଗେ ଛିଣ୍ଡାଇଲ

ବଡ଼ ଶୋକ-ଜଳେ ତ ଭରିଲ

ବଜ୍ରରୁ ସେ କଠିନତା ଅମ୍ଭ ହୃଦ କଲ ଧାତା

ଜାଣି ଏଡ଼େ ଦାରୁଣ ହୋଇଲ

ହେ ଗୋପଜୀବନ !

ବୋଲୁ ବୋଲୁ ବେଳ ଖସୁଅଛୁ

ବଡ଼ ଶୋକ-ଜଳ ହୃଦରେ ପୂରଛୁ ହେ ।

୧୧-୨—୨ ଘାଇ କସ କହିବୁଁ ତୁମ୍ଭଙ୍କୁ । ଘାଇ ଧନ ଦେଇ କଣ୍ଢେଇ ଅମ୍ଭଙ୍କୁ ହେ (ଖ) ୧୨-୧—୧ ବଡ଼ ଅଶାରଙ୍କୁ ଅମ୍ଭ ବଡ଼ ବେଗେ ଛିଣ୍ଡାଇଲ କପଟ ହିନ୍ଦୁରେ ମେଲ ଦେଲ (ଙ) ୧୨-୩—ବଜ୍ରହୁଁ ଅଧିକ ଅମ୍ଭ ହୃଦୟ ଗଢିଲ ଧାତା (ଙ) ୧୨-୨—୨ ବଡ ଅଭାଗିନୀ ଗୋପନାରୀ, ବଣ ପଶି ଯାଉଛ ଗୋପପୁର (ଖ)

ବରନ୍ଦ ପୁଚ୍ଛିଅ ସ୍ନେହେ ନନ୍ଦଦାସେ ବଢ଼ି କହେ
ବରଜବନିତା ବାଣୀ ଶୁଣି
ବହୁତ ସେ ବେଳୁବେଳ କରୁଛ ଶୋକ ପ୍ରବଳ
ବିସ୍ମରିଲେ ତୁମ୍ଭର ଏ ଜ୍ଞାନ
ଗୋ ଗୋପୀମାନେ !
ବିବେକୀ ଅଟର ବୋଲ ଶୁଣ
ବେଳୁବେଳ ଯେ ଉଛନ୍ନ କଲ ମନ ଗୋ ।। ୧୩ ।

ଭାବଗ୍ରାହୀ ବୋଲି ଅମ୍ଭେ ଭରସାରେ ଭଜି ଦମ୍ଭେ
ଛାଡ଼ିଲୁ କୁଳର ଲୋକମାନ
ଭୁଲିଲ ଯେସନେ ମୃଗୀ ମୃଗତୃଷ୍ଣା ଜଳ ଦେଖି
ଆମ୍ଭ ଆଶା ହୋଇଲା ତେସନ
ହେ ଗୋପଜୀବନ ।
ଭଲ ଲୋକେ ନ ବୋଲିବେ ଭଲ
ଭାବ ଦେଇ ଏବେ ଅଭାବ ତ କଲ ହେ ।
ଭାବେ କହୁଅଛୁ ଅମ୍ଭେ ଭ୍ରାନ୍ତ ନ କର ତୁମ୍ଭେ
ଭାବରେ ଭଜିଲ ଗୋପୀଜନେ

ଭାବଗ୍ରାହୀ ଅମ୍ଭେ ଅଟୁ ଭାବରେ ତୁମ୍ଭଙ୍କୁ ଖଟୁ
ଭଜିଥିବ କାଳିନ୍ଦୀ ଘାଟରେ
ଏଗୋ ଗୋପୀମାନେ !
ଭାବେ ବଶ ଅମ୍ଭେ ସ୍ନେହ କଲୁ
ଭାବେ ବୃନ୍ଦାବନେ ଘଟହିଁ ଥାପିଲୁ ଗୋ । ୧୪ ।

୧୪—୧ଉଷା କଲ ଉଜଳ (ଗ)

ମଧୁପ ଯେ ମକରନ୍ଦ— ମଧୁପାନେ ହୋଇ ବନ୍ଦ
ମନରେ ତା' ଲୋଡ଼େ ଅନ୍ୟ ଫୁଲ
ମନୋହର ଯେତେ କେଳି କଲୁ ଆମ୍ଭ ସଙ୍ଗେ ମିଳି
ଏବେ ମନ ମଥୁରାକୁ ଦେଲ
ହେ ଗୋପଜୀବନ !
ମଣିଲୁ ତୁମ୍ଭର ସ୍ୱଭାବର
ମାୟା ହୃଦେ ପୂରି ଶ୍ରୀମୁଖ ମଧୁର ହେ ।
ମନୋହର ମୁଖେ ମନ୍ଦ ହସି କହନ୍ତି ଗୋବିନ୍ଦ
ମାୟା ବନ୍ଧେ ତୁମ୍ଭଙ୍କୁ କରିବୁଁ
ମୋହର ପ୍ରୀତି ନିମନ୍ତେ ମାତା ପିତାଦି ସମସ୍ତେ
ମନ ମଜାଇଲ ତେଜି ସବୁ
ଗୋ ଗୋପୀମାନେ !
ମଧୁପ କୁସୁମ ଭୁଞ୍ଜି ଗନ୍ଧ
ମଧୁରସଭାବ ଅନ୍ତରେ ଥେନାନ୍ତି ଗୋ । ୧୫ ।

ଯିବ ଯେବେ ଯାଅ କନା ଯେତେ ଜାଣିଥିବ କନା
ଜୀଇବୁ ନାହିଁ ନା ତୁମ୍ଭ ଗଲେ
ଯେତେ ବିପତ୍ତି ପଡ଼ିଲା କେହି ଯେତେ ନ ବାଧିଲା
ଜୀବ ଥିବ କି ତା ସୁମରିଲେ
ହେ ଗୋପଜୀବନ !
ଜାଣ ଯାହା କହୁଅଛୁ ଆମ୍ଭେ
କାହିଁ ମାୟା କରୁଅଛ ତୁମ୍ଭେ ହେ ।

୧୨—୧।୪ ରସ ବନ୍ଦୁ ଭଣିକ କି ରସେ + + + + ବୃନ୍ଦାବନ ବ
ବନାଶେ (କ)

ଯାହା କହୁଅଛ ସଖି ! ଜାଣଛ ସର୍ବ ମୃଗାକ୍ଷି

ଯାଅ ବୋଲି ବୋଇଲେ ସେ ଗିରୁ

ଜୀବନ ପାଳିଣ ସ୍ୱଭ ଯେତେ ଭାବେ ହେଲ କ୍ରୀଡ

ଜଗତରେ କଥା ରୁହାଇବୁ

ଗୋ ଗୋପୀମାନେ !

ଜାଣିଲେ ଜଗତ ଜନେ ଯେହ୍ନା

ଯହିଁ ଥିଲେ କୃଷ୍ଣ ଗୋପୀଙ୍କର ସ୍ନେହା ଗୋ । ୨୭ ।

ରସିକ ର ମନ ଯହିଁ ରସ ଶେଷ ହୋଏ ଯହିଁ

ରସ ବିନୁ ରସିକ କି କରେ

ରସେ କି ଚକୋର ପକ୍ଷୀ ନଶିବନୁ ଶଶୀ ଦେଖି

କୁମୁଦନୀ ବିକାଶ ପ୍ରଖରେ

ହେ ଗୋପଜୀବନ !

ତବ ପ୍ରାଏ ଅକ୍ରୁର ଅଇଲା

ରସହିନ୍ଦୁ ଶୋଷି ନୀରସ ସେ କଲା ହେ ।

ରାଜୀବ ଲୋଚନ ହେହେ ଚଙ୍ଗେ ହସି ବଚନେ ଗହେଁ

ରମଣୀ ଗୋପୀଙ୍କି କହେ ଗୀର

ରସ ନସେ ଅନ୍ତରେ ଦେଖ ଉଦେ ହୁରେ ନଶାମଣି

ରମଣୀୟ ଅଟେ କୁମୁଦର

ଗୋ ଗୋପୀମାନେ !

ରବି ସମ ଅକ୍ରୁର ନୁହଇ

ରାଜା କଂସ ବୋଲେ ଅଛି ସେ ନେଇ ଗୋ । ୨୭ ।

୨୨—୭ ଇହନି ୯ ଗୋପ ଜାଇସ ବଲ୍ (ଗ)

ଲୋଭିଲେ କି ପୁଙ୍ଗ ପାଇ        ଦୁଃଖ କି ହୋଇବ ଯେଡ଼ାଇ

ଲିହୁଅଛୁ ବିଧାତା ଯେମନ୍ତ

ଲମ୍ଭନ୍ତି ଅଧିକ ଯେନ୍ତୁ        ପୂର୍ବତନ ଗୁଡ଼ ସେନ୍ତୁ

ପ୍ରୀତି ପୁର୍ବତନ ସେହିମତ

ହେ ଗୋପଜୀବନ !

ଲାଜ ତେଜି କାର୍ଯ୍ୟ ନ ପାଇଲୁ

ଲାଭ ଲୋଭେ ମୂଳଧନ ହରାଇଲୁ ହେ ।

ଲଳିତ ବାଣୀ ସରସ        କହନ୍ତି ସେ ପୀତବାସ

ଲାଠି ଲେଙ୍କନ କଥା ସତ

ଲାଗିଲେ ଦୁର୍ଜନ ମେଳ        ଦଳରୁ ଦନ ଉଛୁଳ

ଲଘୁସଙ୍ଗ କାମ ସ୍ବର୍ଗ ମତ

ଦୋ ଗୋପୀମାନେ !

ଲେଖିଛନ୍ତି ହୃଦରେ ମଣିଥିବ

ଲପ୍ତି ଲଗାଇଲେ ଲାଭ ତ ବୁଡ଼ିବ ଗୋ । ୧୮ ।

ଧର୍ମରୁ ଯେ ପଦ୍ମମୁଖ        ବାଲ କାଳେ ସେବେ ସୁଖ

ବଡ଼ ହେଲେ ବଡ଼ ସୁଖ ଦେବ,

ଧାଧାତା ସେ ନ ସହିଲା        ଘନ ବଜ୍ର ପ୍ରାୟେ କଲା

ବାଣ୍ଡ କୃଷ୍ଣ କେ ଥନ କରବ

ହେ ଗୋପଜୀବନ !

ବଡ଼ ଅଭିମାନୀ ଗୋପନାରୀ

ବଷ ଲୁଣ୍ଡାଇ ଯାଉଛ ଦୂର କରି ହେ ।

୨୧—୩ ବହୁ ଭାତା ନ ସହବ (ଖ) ଘନ ବଜ୍ର ପ୍ରାୟେ କଲ (ଚ)

୨୧—୨—୨ ବେଲ୍ଲ ବେଲ ବେଳ ସବୁଅଛି । ବଡ଼ ଗୋବିନ୍ଦଲ ହଦରେ ସୁରଛି (ଗ)

ବିରସ ବଚନ ଗୋପୀ ନ ବିଗୃହ କପଁ। କୋପୀ
ବେଭାର ସ୍ନେ ନ୍ଦଇ ଭୂମ୍ଭର
ବସି ବିଗୃହ କରବ ବୃନ୍ଦାବନ ସ୍ୱସ୍ଥ ଭାବ
ବଂଶୀ ବଡ଼ ନାଗଦସ୍ନା ପର
ଗୋ ଗୋପୀମାନେ !
ବଧିଣ ବିବେକ ବିଗୃଗବ
ବେଲ ଶୁଭାଶୁଭ ପ୍ରୀତି ନ ଛଡ଼ିବ ଗୋ । ୨୯ ।

ଶିରୀଷ କୁସୁମ ଅଙ୍ଗ ସୁଢ଼ଳ ଗୃହିଁ ଅପାଙ୍ଗ
ଶ୍ରୀମୁଖକୁ ଗୃହିଁ ସେ ବୋଲନ୍ତି
ସୁଧାରସ ବାଣୀ ଶୁଣି ସୁଖୀ ହୋଇ ଗୋପାଙ୍ଗଣୀ
ସୁଲୋଚନ ଦେଖି ହୋଇ ଶାନ୍ତ
ହେ ଗୋପଜୀବନ !
ସଇବ କ ଭାବେ ଦବା ନାଶି
ସବୁ କ ଭାବେ ଥିଡ଼ୁଛୁ ସୁଖସ୍ୱାଶି ହେ ।
ଶ୍ରୀପତି ବୋଲନ୍ତି ବାଣୀ ଶୁଣ ଗୋ ପ୍ରାଣମିତଣି !
· ଶଶୀକି ଅନଳ ବରଷଇ
ସେ ଷଟ୍‌ପଦ କମଳ ମକରନ୍ଦ ପାନେ ଭୋଳ
ଫଳ ମୂଳ ଡାଳ କି ଗ୍ରାସଇ
ଗୋ ଗୋପୀମାନେ !
ଶଶୀକି ନକ୍ଷତ୍ର ଯେସନେ ଶୋଭା
ସମ ଭୁମ୍ଭ ଅମ୍ଭ ପ୍ରୀତି କିସ ଦେବା ଗୋ । ୩୦ ।

ଶୋଭା ପାଉଥିଲା ଗୋପ ସୁନ୍ଦର ବରଜ ରୂପ
ଦେଖି ସୁଖୀ ନୋହୁବ କେ ଅବା
ଶରଧା ବଳଲା ଦେଖି ସେ ବେଳୁ ସର୍ବ ଉପେକ୍ଷି
ଏବେ ଦେଖ ମଥୁରାକୁ ଯିବ
ହେ ଗୋପଜୀବନ !
ସୁଖ ଛଡ଼ାଇଣ ଦେଲ ଦୁଖ
ସୁଧା ଭାବେ ଦେଖୁଥିଲ ଯେ ଶ୍ରୀମୁଖ ହେ ।
ଷାରଣିରେ ଚକ୍ଷୁ ଛନ୍ଦ କରେ ଧର ଦେଇ ଫିଙ୍ଗି
(ସେ) କର ବନ୍ଧୁ ଅନେକ ଆସଇ
ଷାଗରେ ବୋଇଡ ମେଲ କର ବଶ ହେବ ବୋଲି
ତନ୍ତ୍ର ଅନ୍ତ ଅନ୍ତେ ନ ଜାଣଇ
ଗୋ ଗୋପୀମାନେ !
ସନ୍ଦେହଟି ନ କର ମନକୁ
ସ୍ନେହ ଧନ ଦେଇ କିଣିଛୁ ଆମ୍ଭଙ୍କୁ ଗୋ । ୩୧ ।

ଶୁଣୁଛ ସକଳ କଥା ସୁହୃଦେ ନ ଦେଇ ବ୍ୟଥା
ଶିଶୁକାଳେ ସେବାରେ ଅଇଲୁ
ଶୁଭାଶୁଭେ ବହୁ କର୍ମ ସବୁଠାରେ ଏହୁ କଥା
ସୁଖଫଳ ପାଇ ହରାଇଲୁ
ହେ ଗୋପଜୀବନ !
ସତ କହ ଆସିବ କି ବାରେ
ଶୁଣି ଶାନ୍ତ ଆମ୍ଭେ ଭକ୍ତକୁ ମନରେ ହେ

୩୧ । ୧ ନାନ୍ଦନ୍ଦ ସୁନ୍ଦର ରୂପ (ବ)

ସଙ୍ଗେ ଯିବେ ଗୋପଜନେ    ଗୋପାଳ ତନୟମାନେ

ତାତ ମାତ ଯିବେ ଆମ୍ଭ ସଙ୍ଗେ

ଯାତ୍ର ଧନୁଯାତ୍ରା ଶେଷ    ମନୋରଥ କର ତୋଷ

ଲେଉଟି ଅସିବୁ ଯାଇଁ ବେଗେ

ଗୋ ଗୋପୀମାନେ !

ସମସ୍ତେ ହରଷେ ବୋଲ ଯାଅ

ଶୀଘ୍ରେ ଯାଇ ଆସ ଯଶ ଗୁଣ ଗାଅ ଗୋ । ୩୨ ।

ହୋଉ ବୋଲି ନ ବୋଇଲେ    ହସ୍ତ କପୋଳେ ମାଇଲେ

ହରିଣ ନୟନୁ ଲୁହ ପୋଛୁ

ହୋଇବ ଯେ ହୋଉଅଛି    ତା ହିନୁ ସେ ନାହିଁ କିଛି

ଯାହା ଘଟିଲାଣି ଅଛୁ ବାଛୁ

ହେ ଗୋପଜୀବନ !

ହୋଉ ଶୁଭେ ଔରଧନ ନାଶ

ହୋଉ ଆମ୍ଭ ମାନଚନ୍ଦ୍ର ପରକାଶ ହେ

ହରଷ ହୋଇଣ ହରି    ହାକନ୍ତି ବ୍ରଜସୁନ୍ଦରୀ

ହୋଇ ଏକ ଆରକେ ପୀରତି

ହୃଦରେ ସୁଭାବ ଥିବ    ହରଷେ ହନ ବଞ୍ଚିବ

ହୋଇ ସଙ୍ଗ କରିବ ପୀରତି

ଗୋ ଗୋପୀମାନେ !

ହୃଦେ ଆମ୍ଭ ମାଳା ତୁମ୍ଭେମାନେ

ହୋଉ ଅଜ୍ଞା ଯାଅ ଯା ସଦନେ ଗୋ । ୩୩ ।

୩୩ । ୧ ହେଉ ବୋଲି ଶଶୀମୁଖୀ  ସନମତ କଲେ ଦେଖି ନୟନୁ ନେତକ ଧାର ପୋଛି (୨)

ଛୁଣ୍ଡାଲ ବଣ୍ଧ ନାଗର　　　　ଅଶେଷ ଗୁଣ-ସାଗର

କପଟିକୁ ଛୁଅଲ କଢ଼ାଇ

ଯମାଶୀଳ ପ୍ରଭୁ ଯେନ୍ତ　　　　ଛଦ୍ରେ ନନ୍ଦସୁତ ସେନ୍ତୁ

ଯମେ ହଲଧର ସାନ ଭାଇ

ହେ ସାଧୁଜନେ !

କ୍ଷମା ମାଗେ ଦୀନ ଯେ ଶ୍ରୀକର

ଛିଦ୍ର ଅଧରୁ କର ତାକୁ ପାର ହେ ।

ଛନ୍ଦ-ଶିରୋମଣି ଛନ୍ଦ　　　　ଛଛନ୍ଦେ ଗୋପୀଙ୍କି ବନ୍ଧ

ଯମ ଅନୁରୂପେ ଦେଖାଇଲେ

ଛଛନେ ରଥେ ବସିଲେ　　　　ମଥୁରାକୁ ବିଜେ କଲେ

ଯମେ ପୁରେ ପ୍ରବେଶ ସେ ହେଲେ

ସେ ଗୋପଜୀବନ ।

କ୍ଷମା କର ମୋହୋର ସେ ଦୋଷ

ଯମେ କହିଲଇଁ ଗୋପଲୀଳା ରସ ସେ । ୩୦ ।



୩୪—୧ । ୧୪ ଛନ୍ଦେ ଅନୁରାଗ ବଢ଼ାଇଲେ ।

---

ଛଛନ୍ଦେ ରଥେ ବସିଲେ　　　　ମଥୁରାକୁ ବିଜେ କଲେ

ଷୂଦମଦ ବୃନ୍ଦ ସବେ ବୋଲେ

ହେ ଗୋପ ଜୀବନ

କ୍ଷମ୍ୟ ଯାଉ ହେତେ ପାପ ମୋର

ଛନ୍ଦେ ବନ୍ଧନେ ବଲ ତ ଏ କଣ୍ଠର ହେ (୬)

# କୋଳାହଳ ଚଉତିଶା

ମଥୁରାକୁ କୃଷ୍ଣଚନ୍ଦ୍ର ଯିବା ଗୋପରେ ଯେଉଁ କୋଳାହଳ ଉଠିଥିଲା ତାହା ଏହି ଚଉତିଶାରେ ବର୍ଣ୍ଣିତ ହୋଇଥିବାରୁ ଏହାର ନାମ କୋଳାହଳ ଚଉତିଶା ହୋଇଅଛି । କୋଳାହଳ ଚଉତିଶାର ଜନପ୍ରିୟତା ଯଥେଷ୍ଟ । ଏହାର ମଧୁର ପଦାବଳୀରେ ଶୋକର ଯେଉଁ କରୁଣ ମୂର୍ଚ୍ଛନା ଉଠିଅଛି ତାହାହିଁ ଏହି ଜନପ୍ରିୟତାର ଭିତ୍ତି । ଯେଉଁ କବିତାରେ ମାନବ ଜୀବନର ଚିରନ୍ତନ ଶୋକର ଅବତାରଣା ତାହାହିଁ ମାନବ ଜାତିର ମଧୁରତମ କବିତା ।

କରୁଣା ସାଗର      କମ୍ବୁ-ଚକ୍ରଧର
କର ଧରି ରାଧା କହେ ବାଣୀ
କରୁଣାନିଧାନ !      ମୋହ ପ୍ରାଣଧନ !
କପାଇଁ ଯାଉଛ ଛାଡ଼ି ପୁଣି
କଞ୍ଜନୟନ ହେ !
କରିଥିଲ ମନେ ପ୍ରତିଅଷ୍ଟ
ଅଗ୍ନା ଚିଙ୍ଗାଇ ନରଷ୍ଟ କରିଗଲେ ଜଗତେ ଅର୍ଜିବ କଉଁ ଯଶ ।୧।

ଖେଦ ରାଧାବାଣୀ      ଶୁଣି କମ୍ବୁପାଣି
ଖେଦଭରି ହୋଇ କହେ ବାଣୀ
ଖଳ କଂସାସୁର      ପେଷିଛି ଡଗର
ଆସିଛି ଆମ୍ଭଙ୍କୁ ନେବ ପୁଣି
ଖଳନାଶିନୀ ରେ !
ଖଣେହେଁ ଅକ୍ରୂର ନ କରିବ
ଖଣ୍ଡିଲା ଦଇବ ତୁମ୍ଭ ଆମ୍ଭ ଭାବ ଗୃହଦନକୁ ତୁ ଗୃହିଁଥିବୁ । ୨ ।

ଗୋକୁଳ ନନ୍ଦନ ! ଗିରିଧର ଘନ-
ଶ୍ୟାମ ! ଜନାର୍ଦ୍ଦନ ! ଦଇତ୍ୟାରି !
ଗୋପୀଙ୍କ ଜୀବନ ! ମଦନ ମୋହନ !
ଗଲେ କି ଆସିବ ଗୋପପୁରୀ
ଗୋପୀବଲ୍ଲଭ ହେ !
ଗଲ୍ପ ଜଣା ତୁମ୍ଭ ପ୍ରୀତିପଣ
ଗଲା କାଟିଦେଇ ଅକ୍ରୂର ଅମ୍ଭର ଯେନଯାଉଅଛି ପଞ୍ଚପ୍ରାଣ । ୩ ।

ଘନଜଘନ ! ମନ୍ତ୍ରପିକବଚନ !
ଘେନ ମୋ ବିନତି ପ୍ରାଣସହି !
ଘଡ଼ିଏ ଅନ୍ତର ହେଲେ ଯୁଗାନ୍ତର
ଘୋଷି ଘୋଷି ଦିନ ସରୁନାହିଁ
ଘନବସନ ରେ !
ଘଟ ରହିଅଛି ତୋର ତହିଁ
ଘେନବି ନାହିଁ ମନରେ ଗୁରୁଦୁଖ ସତ୍ୱରେ ଆସିବୁ ବେନ ଭାଇ ।୪।

ନନ୍ଦ ଏଡ଼େ ମନ୍ଦ ନ ଜାଣନ୍ତି ଛନ୍ଦ
ମନ୍ଦରୁ ବିକି ଗୋ ପ୍ରତେ ଗଲେ
ନବୀନସୁନ୍ଦର ଶ୍ୟାମକଳେବର
ଯଶୋଦା କେମନ୍ତେ ମୂରୁଛିଲେ
ନନ୍ଦନନ୍ଦନ ହେ !
ନଷ୍ଟ ଯାଉଛି ଛଡ଼ିକର
ନର୍ଲ୍ଲଜ ଅମ୍ଭେ ଏ ନ ଯାଇ ରହିଛୁ ପଶ୍ଚାତେ ମରିବୁ ଝୁରି ଝୁରି ।୫।

ଚତୁରବଦନ ! ମୋହ ପ୍ରାଣଧନ !
ଚୂରବଦନକୁ ଗୋ ଥିବୁ ଚାହିଁ

ଚଉକୁ ସୁମନ                    କର ପ୍ରାଣଧନ !
ଚନ୍ଦ୍ର କୁମୁଦରେ ଭେଦ ନାହିଁ
ଚନ୍ଦ୍ରବଦନ ଗୋ !
ଚକ୍ଷୁର ପିତୁଳୀ ତୁହି ମୋର
ଚମ୍ପା ବରନ ! ରାଜହଂସଗମନ ! ମେଲାଣି ତୁ ମୋତେ ବେଗେ କର ॥

ଛଡ଼ିଣ ପତି                    ସହୋଦର ସମ୍ପତ୍ତି
ପ୍ରୀତି-ଗୁଣନିଧି ଥିଲୁଁ ପାଇ
କ୍ଷଣିକ ଛଟରେ                    ସକଳ ହରାଇ
କ୍ଷୋଭରେ ମରୁଛୁଁ ଗୋପଗୋଇ
କ୍ଷମାସାଗର ହେ !
ଛାର ଏ ଜୀବନେ କାର୍ଯ୍ୟ ନାହିଁ
ଛଡ଼ିଯିବ ବୋଲି ଯେବେ ମନେ ଥିଲା ଛଡ଼ାଇଲ କୁଳ କାହିଁପାଇଁ ॥

ଜାଣିନା ସୁନ୍ଦରୀ                    ଯେତେକ ଦୈତ୍ୟ ମାରି
ଗୋପରେ ରକ୍ଷିଲି ଗୋପକୁଳ
ଜଳନ୍ତା ଅନଳ                    ଗର୍ଭେ ଠାବ ଦେଲି
ଜିଣିଲି ସ୍ୱର୍ଗରେ ଆଖଣ୍ଡଳ
ଜଗତମୋହନ ଗୋ !
ଦନୁ ଜନୁ ଦେଲେ ପରମାଦ
ଜଗତ ମଧ୍ୟରେ ଯେତେକ ଦନୁଜ ସକଳ କରଇ ମୁହିଁ ବଧ । ୮ ।

ଝାଡ଼ବନେ ପଶି                    ଆହେ ବ୍ରହ୍ମଋଷି !
ଜାଣି ଦବା ଯେନ ବୁଲୁଥିଲୁଁ
ଝାଡ଼ଫୁଲ ଡାଳ                    ଗୁନ୍ଥି ବନମାଳ
ହାର କରି ଗଳେ ଲମ୍ବାଇଲୁଁ

ଝାଡ଼ି ବିନୋଦ ହେ !
ଝୁରିବାକୁ କଷ୍ଟେଁ କରିଗଲ
ଝଂପକେତନ ଶରେ ଅମ୍ଭ ଜୀବନ ନେବାକୁ ହେଉଛ ତତପର ।୯।

ନବ ନିତମ୍ବିନି !                    ଘେନ ମୋର ବାଣୀ
ନ ଭୁଲରେ ସଖି ! ମନେ ଆନ
ନୀରଜନନ୍ଦନ !                    ନବଯୌବନା !
ନୀରକ୍ଷ ଜନ ଜଣାଣ ଘେନ
ନୀଳବସନ ରେ !
ନାରୀଶ ବଚନ ଛାଡ଼ ମୋର
ନଷ୍ଟପ୍ର କରି କହୁଛ ପ୍ରାଣସଖି ! ତୁ ମୋତେ ମେଲାଣି ବେଗେ କରି ।୧୦।

ଟେକିଥିଲୁଁ ବଜ୍ର                    କର ଅନ୍ତର୍ଗତେ
ଟେକି ଟୋପରେ ପକାଇ ଦେଲ
ଟାଣପଣ ଯେତେ                    ଥିଲା ଅମ୍ଭ ଚିତ୍ତେ
ମୁହୂର୍ତ୍ତ ମାତ୍ରକେ ଚୂର୍ଣ୍ଣି କଲ
ଟାଣ ଭାଙ୍ଗିଲ ହେ !
ଟଙ୍କଧର-ବପୁ-ହସ୍ତେ ଦେଇ
ଟାଳଦେଇ ଗୋପୀମାନଙ୍କୁ ଯାଉଛ ଆଉ କି ଆସିବ ବେନି ଭାଇ ।୧୧।

ଠାବ କଲି କେତେ                    କେତେ ଚନ୍ଦ୍ରାନନ !
ରାଧାକୃଷ୍ଣ ଏହି ଦୁଇ ନାମ
ଠାବେ ଶୁଭୁ                    ଅଛି ଶବଦରେ
ଅଭେଦ ପୀରତି ଦୁଇ ଜଣ
ଠଣ ସୁନ୍ଦରୀ ଗୋ !

ଠାବ କଲେ ହରି ସର୍ବଠାରେ
ଠିକେ ମାର୍କଣ୍ଡ ହ୍ରଦରେ ଧାଇଲେ ଠାବ ଦେଲୁଁ ତାଙ୍କୁ ହୃଦୟରେ ।୧୨।

ଡାକୁଥାଇ ବଂଶୀ- ସ୍ୱନ ନିରନ୍ତରେ
ଯେ ବେନି ଶ୍ରବଣ ଡେରିଥାଇ
ଡର ଭୟ ଲଜ୍ଜା ସବୁ ଦୂର କରି
ବଣି ସର୍ବଦିନ ହୋଇଥାଇ
ଡମ୍ଭ-ନାଶନ ହେ !
ଡକା ଆମ୍ଭଙ୍କୁ ତ କରୁଅଛ
ଡଙ୍କା ବାଜୁଅଛି ଜଗତ ମଧ୍ୟରେ ରାଧା ପ୍ରାଣବନ୍ଧୁ ଶିଖିବସ୍ତ୍ର ।୧୩।

ଢମ କଲୁ ଢାଳୀ ଦେଲୁ ପାଦେ ଦଳି
ଢାଳିଲା ବିଷ ପୀୟୂଷ ବୋଲି
ଢାଲେ ବେଦପଢ ବତ୍ସ ହରିନେଲା
ବତ୍ସ ବାଳକଙ୍କୁ ଜାତ କଲୁ
ଢମ-ନାଶିନ ରେ !
ଢମ୍ଭ କହୁନାହିଁ ମୁହିଁ ତୋତେ
ଢଳଢଳ ପଦ୍ମ ନୟନରୁ ନୀର ଖସି ପଡ଼ୁଅଛି ହୃଦଗତେ ।୧୪।

ଅହେ ଦୀନବନ୍ଧୁ ! ଅହେ କୃପାସିନ୍ଧୁ !
ତପ କରିଥିଲୁଁ ତୁମ୍ଭପାଇଁ
ଅନେକ ଭରସା ଥିଲା ପ୍ରଭୁ ଆଶା
ନୀରସ ହୋଇଲୁ ଗୋପଗୋଈ
ଅହେ ପଦ୍ମମୁଖ !
ଆଉ କି ଆସିବ ଗୋପପୁର
ଅଭାଗ୍ୟ କର୍ମରୁ ଦଇବ ବଳରୁ ଆସି ଘୋଟିଲା ବିପଦ ଘୋର ।୧୫।

ତରୁଣୀରତନ ! ମୋହ ପ୍ରାଣଧନ
କହିବାକୁ ମୋତେ ଦନ ନାହିଁ
ତୁମ୍ଭେ ଯେ ସୁଜାଣ ତରୁଣୀରତନ
ଛଳେହେଁ ବଲମ୍ ନ ସହଇ
ତନୂଉଦର ଗୋ !
ତ୍ରିଭୁବନେ ଯାର ତେଜଗୁଣ
ତୁହି ଯେ ସୁଜାଣ ତରୁଣୀ ରତନ କୋପ କରିବନ୍ତି କଂସରାଣ ।୧୬।

ଥିଲ ଗୋପପୁରେ ଗୋପାଳ ସଙ୍ଗରେ
ଗୋପୀଙ୍କ ଜୀବନ ହୋଇଥିଲ
ଥିଲୁ ସେବାକରି ହେ ବନବିହାରୀ !
ସ୍ଥିରମନକୁ ଅସ୍ଥିର କଲ
ସ୍ଥାନ ଭାଙ୍ଗିଲ ହେ !
ଥିଲା ଯେତେ ଆଶା ଆମ୍ଭ ମନ
ସୂଚନଧି ଏବେ ଆମ୍ଭ ହସ୍ତୁଁ ଗଲ ଅଉ ଏ ଜୀବନେ କି କାରଣ ।୧୭।

ଦାରିଦ୍ର୍ୟଭଞ୍ଜନ ! ଦୁଃଖ ବିନାଶିନ !
କରିଅଛ ପ୍ରିୟ ଭାବ ଯେତେ
ଦଇବ ଅବଳ ହେବାରୁ ବିଫଳ
କର୍ମ ଅବଳ ସହିବ କେତେ
ଦୁଃଖନାଶିନ ରେ !
ହନୁ ହନୁ ହେଲା ପରମାଦ
ଦଇତର ସଙ୍ଗେ ଦ୍ୱନ୍ଦ୍ୱ ଆରମ୍ଭିଛ ପାଉଛ ସେଥି ଅନେକ ଫାନ୍ଦ ।।

ଧରଣୀମଣ୍ଡନା ଗଜେନ୍ଦ୍ରଗମନା
ବୋଲନ୍ତି ଶୁଣ ହେ ଦଇତ୍ୟାରି !

ଧରଣ ଅକ୍ରୂର ଜୀବନେ ମାରବୁ
ନ ରହିବୁ ଅମ୍ଭେ ଗୋପପୁରୀ
ଧନ୍ଦା ସରବ ହେ !
ଧର୍ମହିଁ ଯେବେ ହୋଇବ ସଢ
ଧନ୍ୟ ଯାହା ଦେହ କପଟେ କରଛି ନଷ୍ଟେ ନାଶ ଯିବ ଭୋଜନାଥ ॥

ନବନଦମିନ ! ନବ ଯଉବନ !
ନବୀନକିଶୋର ! ବ୍ରଜବାଳ !
ନୂହଇ ବେଭାର ରଜାର ଛଳର
କପାଇଁ ତାହାକୁ ଦଅ ଗାଳ
ନୀଳବସନ ରେ !
ନାରୀଶ ବଚନ ଛାଡ଼ ତୋର
ନାସ୍ତ୍ୟ କରଣ କହୁଛ ରେ ସହି ! ମେଲ୍ଲଣି ଭୁ ମୋତେ ବେଗେ କର ॥

ପଦ୍ମ ଲୋଚନ ବଚନ ଶୁଣି ଗୋପୀ
ମଉନ ହୋଇ ସ୍ତବଧ ହେଲେ
ପରମ-ସାଧବୀ ପଙ୍କଜ-ଲୋଚନଙ୍କୁ
ବାକଲରେ ଜଳ ବୃଷ୍ଟି କଲେ ।
ପ୍ରାଣବଲ୍ଲଭ ହେ !
ପୀଡଲା ଯେତେକ ପଞ୍ଚବାଣ
ପୀରତି ଭୁଜଙ୍ଗ ହେବ ବୋଲି କରି ପରତେ ନ ଥିଲା ଅମ୍ଭ ମନ ॥

ଫର୍ଦୋଲ ଅକ୍ରୂର ବୋଲଇ ଉତ୍ତର
ବୋଲି ନ କର ହେ ଗୋପାଙ୍ଗଣି !
ଫେଡ଼ ମନ ଦୁଃଖ ନ ହୋଇ ବିମୁଖ
ସଙ୍ଗେ ଦେଅ ରାମ କୃଷ୍ଣ ଆଣି

ଯାନେ ପଡ଼ିବ ଗୋ
ଯେତେକ ଗୋପାଳ ଗୋପାଙ୍ଗଣୀ
ଯେଉଁ କହୁଅଛୁ ଭେଜ ମହାଗର ନ ଗଲେ ଅଛିବ ଏଣ୍ଡସିଣି ।୨୨।

ବ୍ରଜପୁର ବାଳୀ ମନେ ମନେ ଭାଳ
ଅକ୍ରୂରଙ୍କୁ କର ଯୋଡ଼ି ଭଣି
ବାଳୁତ କୁମର ଶ୍ୟାମ କଳେବର
ନ ଜାଣନ୍ତି ଛନ୍ଦ କୁଟ ବାଣୀ
ବଂଶୀ—ବିନୋଦ ହେ !
ବୁଝି ତ ଆମ୍ଭଙ୍କୁ ଦିଶୁ ନାହିଁ
ବିନୟ କରଣ କହୁଅଛୁଁ ଆମ୍ଭେ ଭଲେ ଅନ୍ତର କରବ ନାହିଁ ।୨୩।

ଭଳ ଭଳ ଗୋପୀ କୃଷ୍ଣ କର ଦେଇ
ଅକ୍ରୂରଙ୍କୁ ଦେଇ ସମର୍ପିଲେ
ଭବଗ୍ରାହୀ କର ଧରି ନୀଳାମ୍ବର
ରଥରେ ଯାଇଁ ବିଜୟ କଲେ
ଭଇ ଦୁଇ ଘେନ
ଭାବରେ ଅକ୍ରୂର ଗଲ୍ପ ପୁଣି
ଭାବଗ୍ରାହୀ ଯହୁଁ ଅନ୍ତର ହୋଇଲେ ନିର୍ମାୟୀ ହୋଇଲେ ଗୋପାଙ୍ଗଣୀ ॥

ମେଲ ହୋଇ ସ୍ୱଭ ଗୋପାଳ ବହୁତ
ଗୋରସ ଭାର କନ୍ଧରେ ଘେନ
ମାଧବ ମୁରାରି ବେଣୁ ଧ୍ୱନି କରି
ଗଲେ ଗୃହିଁ ଥିଲେ ଗୋପାଙ୍ଗଣୀ
ମହା ଶୋକଭରେ

ନ ଦେଖିଲେ ଯହୁଁ ରଜ୍ଜୁବରେ
ମୂର୍ଚ୍ଛା ଯାଇଣ ପଡ଼ନ୍ତେ ଶଶୀମୁଖୀ ଅକ୍ରୁରେ ଡାକଣ ଶ୍ରୀକୃଷ୍ଣରେ ।୨୫।

ଯଶୋଦାନନ୍ଦନ ଜଗତଜୀବନ
ଯମୁନାକୂଳରେ ହେଲେ ଯାଇଁ
ଯୋଡ଼ ବେନକର ବୋଲଇ ଅକ୍ରୁର
ଏଥିରେ ସ୍ନାନ କରିବମୁହିଁ
ଜଗ-ସେ‌ଦର ଯେ
ଜାଣିପାର ଅକ୍ରୂରର ମନ
ଜଳସ୍ଥଳରେ ଦର୍ଶନ ଦେଇକର ଦେଖାଇଲେ ତାଙ୍କୁ ବ୍ରହ୍ମଜ୍ଞାନ।୨୬

ରଥ ପରେ ବସେ ବୀର ଜଗନ୍ନାଥ
ମଥୁରାପୁରକୁ ଅବୋରଲେ
ରଜ୍ଜୁବର ଶୂନ୍ୟ ମାର୍ଗେ ଷେପିଗଲ୍ଲ
ମଧୁବନରେ ପ୍ରବେଶ ହେଲେ
ରାମ କୃଷ୍ଣ ଦେଖି
ମଥୁପୁର ଜନେ ହେଲେ ସୁଖୀ
ରହିଲେ ଗୋପାଳ ଗୋରସ ସହିତେ ରାଜା ମଥୁପୁର ସ୍ଥାନଦେଖି।୨୭।

ଲବଣ୍ୟକୁମର ବୋଲନ୍ତି ଉତ୍ତର
ରଥ ଘେନ ତୁମ୍ଭେ ବେଗେ ଯାଅ
ରାମକୃଷ୍ଣ ବେନ ଭାଇ ଅଛନ୍ତି
ଏମନ୍ତ ରାଜାଙ୍କ ଆଗେ କହ
ଆଜ୍ଞା ପାଇ ବୀର
ରଜ୍ଜୁବର ନେଲ୍ଲ ଆଗକର
ରନ୍ଧନ ଭୋଜନ ମାର୍ଜନା ସାରଣ ଜଣ୍ଟିନ୍ତେ ରହିଲେ ମଥୁପୁରୀ ।୨୮।

ବଳରାମ କର ଧର ପୀତାମ୍ବର
ଗୋପାଳମାନଙ୍କ ସଙ୍ଗେ ହେଜ।
ବୋଲନ୍ତି କଟକ ଦେଖିବା ଛଟକ
ଛ ଅଣେ ବଇଛୁ ନୃପମଣି
ବାଇ ବଂଶୀ ହରି
ନଜପ୍ୟେ ଅନନ୍ଦେ ମଧୁପୁରୀ
ବଚନ ସେ ପୁର ଅଛି ମନୋହର ତା ସମାନ କେହୁ ନୋହେ ସରି ॥
ଶ୍ରୀହରି ବଜପ୍ୟେ ଶୁଣି ଲୋକଚଯ୍ୟ
ଦ୍ୱାରେ ପୂର୍ଣ୍ଣକୁମ୍ଭ ବସାଇଲେ
ଶ୍ରୀରାମ କୃଷ୍ଣଙ୍କ ଦର୍ଶନ ନିମନ୍ତେ
ବାଳ ବୃଦ୍ଧ ଯୁବା ଆସି ହେଲେ
ଶୁଭେ ହରଦ୍ଧନ
ଶ୍ୟାମଜଳଧର ତନୁ ରୁଚି
ସର୍ବେ ଜୟ ଜୟ ହୁଳହୁଳି ଶବଦ ମଙ୍ଗଳ ପଢ଼ନ୍ତି ସଚମ୍ନ । ୩୦ ।
ଶୁଭିଲା ଶବଦ ହରଗୋଲ ନାଦ
ରଜକ ମାରଣ ବସ୍ତ୍ର ହର
ସୁଦାମା ମାଲୀକି ମୋକ୍ଷ କର ହରି
କୁବୁଜା ରୂପକୁ ଉଚ୍ଚ କରି
ଶୁଭେ ଧନୁଘରେ
ହୋଇଲେ ସେ ଧନୁ ବାମକରେ
ସେ ଧନୁ ଭାଙ୍ଗିଣ ପ୍ରଭୁ ଆବଦନ ପ୍ରବେଶ ହୋଇଲେ ସିଂହଦ୍ୱାରେ ॥
ଶୁଚେ ଗଲା ନିଶି ଅରୁଣ ପ୍ରକାଶି
ନିତ୍ୟକର୍ମମାନ ବଢ଼ାଇଲେ

ଶୁଣରେ ଶ୍ରୀଧର ଗୋପବୃନ୍ଦ ଘେନ
ମଥୁରା ପଥରେ ବିଜେ କଲେ
ଶୁଭେ ନନ୍ଦନନ୍ଦନ
ଶ୍ୟାମଳ ଜଳଦ ତନୁ ଛନ୍ଦି
ସଚରାଚରରେ ଜନମ ହୋଇଣ ନିର୍ମଘୀ ହୋଇଲେ ଗୋପାଳୁଣୀ ॥

ହୋଇ ବୀରବେଶ ରମ୍ୟ ପୀତବାସ
ହରିଲେ ଗଜ ମାହୁନ୍ତ ପ୍ରାଣ
ହୋଇଣ ଆନନ୍ଦ ମାର ମଲ୍ଲବୃନ୍ଦ
ଦେଖୁଛନ୍ତି ତହିଁ ସଭାଜନ
ହର ହର ହୁଇ
କାଳ ବିକାଳର ରୂପ ହୋଇ
ନିହଲେ ପରାଣ ଭୋଜ ନୃପରାଣ ପଡ଼ିଲା ଜଗତ ତଳେ ଯାଇ ॥୩୩॥

ଯଧ୍ୟ ଦୈତ୍ୟ ମାରି ନନ୍ଦୀ ଯେ ଉତ୍ସବ
ଅମରବୃନ୍ଦ ଉଷତ ହେଲେ
ଘୋଷରୁ ମାତା ପିତାଙ୍କୁ ଉଦ୍ଧାରଣ
ଉଗ୍ରସେନେ ତହିଁ ରାଜା କଲେ
କ୍ଷମାଶୀଳ ହରି
ଛଳେ ଜରାସନ୍ଧ ଦର୍ପ ହରି
ଘର ଦଇବନ୍ଧୁ ବଳଦେବ ବୋଇଲେ ଘୋଷରୁ ଉଦ୍ଧର ଦଇତ୍ୟାରି ॥

# ଉଦ୍ଧବ ଚଉତିଶା

ଚିତ୍ରରେ ଅନ୍ଧମାନ ବଙ୍ଗୀୟ ଭକ୍ତ କୃଷ୍ଣଦାସ ଭାଇଙ୍କ ସ୍ୱରଚିତ କୀର୍ତ୍ତନ ପଦାବଳୀରେ ତତ୍ତ୍ୱଭାଗବତ ମୁଦ୍ରାଇଅଛନ୍ତି । ଗୋପୀନାଥଙ୍କ ଉଦ୍ଧବ ଚଉତିଶାର ଅର୍ଥ ଏ ଚଉତିଶାରେ ନାହିଁ ସତ୍ୟ, ତଥାପି ଭାବର ସାରଲ୍ୟ ଅଭିବ୍ୟକ୍ତି ପାଇଁ ଏହାର ସ୍ଥାନ ଗୁରୁ ଉଚ୍ଚ ।

(ରାଗ ଚକ୍ରା ଦେଶାକ୍ଷ)

କହନ୍ତି ସକଳ ଗୋପୀ ଉଦ୍ଧବଙ୍କୁ ଚାହିଁ
କେବେହେଁ କୃଷ୍ଣଙ୍କୁ ଆଉ ବିଶ୍ୱାସ ନ ଯାଇ
ଉଦ୍ଧବ ହେ !
କର୍ମ ଆମ୍ଭ ହୀନ
କୃଷ୍ଣ ଅନ୍ୱେ କରି ଗୋପୀ ବଞ୍ଚିଥିଲୁଁ ଦିନ । ୧ ।

ଖଣ୍ଡିଥିଲୁ ଗୋପୀ ଆମ୍ଭେ ଅଙ୍ଗ ସଙ୍ଗ ହୋଇ
କ୍ଷଣକର ସୁଖ ନ ରଖିଲେ ଭାବଗ୍ରାହୀ
ଉଦ୍ଧବ ହେ !
ଗଣ୍ଡୁପୀ ଗୋଇ
ଖଗପକ୍ଷ-ନାଥଙ୍କର ଜନ୍ମେ ଜନ୍ମେ ଦ୍ରୋହୀ । ୨ ।

ଗୋବିନ୍ଦର ଗୁଣ ଗୁଣି ଜୀବନ ଥାଉଛି
ଗୋପୀନାଥ ନାମ ଆଉ ବହିଲେ କାହିଁକି ?
ଉଦ୍ଧବ ହେ !
ଗରବ ସରନ୍ତି
ଗିରି ଧର ଛାଡ଼ିଦେଲେ ମଥୁରା ବସନ୍ତି । ୩ ।

ଘୋଷ୍ ଥାଉଁ କୃଷ୍ଣ-ନାମ ଗ୍ବନ୍ଦ ଦବା ବସି
ଘାଉଁଅ ହରଣୀ ପ୍ରାଏ ହେଲୁ ବ୍ରଜବାସୀ
ଉଦ୍ଧବ ହେ !
ଘଟେଣ ମୂରଛ
ଘେନ କ୍ରୀଡ଼ା କରୁଥିବେ ମଥୁରା ଯୁବତୀ । ୪ ।

ନାନାରସେ ରସାଇଲୁଁ ନନ୍ଦ-ନନ୍ଦନଙ୍କୁ
ନାଗରଙ୍କ ସଙ୍ଗ ପାଇ ମୂର୍ଚ୍ଛିଲେ ଆମ୍ଭକୁ
ଉଦ୍ଧବ ହେ !
ନାରାୟଣ ସ୍ୱାମୀ
ନୋହିଲେ କେମନ୍ତେ ସେ ହୋଇଲେ ଅନ୍ତର୍ଯ୍ୟାମୀ । ୫ ।

ଚରପଣେ ପୂତନା ସ୍ତନରେ ବିଷ ଲାଇ
ଚତୁର୍ଦ୍ଧା ମୂରତି କୃଷ୍ଣ କୋଳରେ ବସାଇ
ଉଦ୍ଧବ ହେ !
ଚଖାଇଲା ସ୍ତନ
ଚୁମ୍ବିବା ମାତ୍ରକେ ତାର ଶୋଷିଲେ ପରାଣ । ୬ ।

ଛାଡ଼ିଲୁଁ ସକଳ ଲଜ୍ଜା ଭଜିଲୁଁ ତାହାଙ୍କୁ
ଛନ୍ଦାଇ ଗଲେ ମୁହାଁସ କହିବୁ କାହାକୁ
ଉଦ୍ଧବ ହେ !
ଛଳ ନ କରିବା
ଛନ୍ଦିଥିଲା ଶ୍ରୀକୃଷ୍ଣଙ୍କୁ ବିଶ୍ୱାସ ନ ଦିବା । ୭ ।

ଜାଉ ଏ ଜୀବନ ଯେବେ ନଇଲେ ମାଧୋଇ
ଜୀଇଥାଉ କି କରିବୁଁ ଗୋପପୁର-ଗୋଇ ?

ଉଦ୍ଧବ ହେ !
ଯୋଗିଣୀ ହୋଇବୁଁ
ଜଗନ୍ନାଥ ନାମ ଧରି ତୀର୍ଥାନ୍ତରେ ଯିବୁ । ୮ ।

ଝାଡ଼େ ଫୁଟି ମାଳତୀ ଲଭନ୍ତି ଯେତେ ଗତ
ଝାଡ଼ବାସୀ ଗୋପୀ ଆମ୍ଭ କର୍ମ ସେହି ମତ
ଉଦ୍ଧବ ହେ !
ଝାସିବୁଁ ଯମୁନା
ଝମଟେକ ରହି ତୁମେ ଦେଖିଯାଅ ବନା । ୯ ।

ଞପ୍ରମ କରାଇ ଆନ ଦାନ କଷ୍ଟକର
ଞସ୍ତ୍ରେ ଆସିବୁ ବୋଲି ବେଳ କର ଧର
ଉଦ୍ଧବ ହେ !
ନଇଲେ କପାଳେଁ
ଞରେଁ ସ୍ତ୍ରୀ ହତ୍ୟା ସେ ଲଭିବେ ଭାବଗ୍ରାହୀ । ୧୦ ।

ଟାଣପଣେ ଯେତେ ଯେ ଅସୁର କଂସ ଚର
ଟୋକାଗୋଷ୍ଠି ବେଳୁ ତା ମାଇଲେ ଚକ୍ରଧର
ଉଦ୍ଧବ ହେ !
ଟାଣପଣ ଗଲା
ଠେସକର ପଣେ ସେ ଅକ୍ରୁର ଭଣ୍ଡି ନେଲା । ୧୧ ।

ଡିଆ ହୋଇଥିଲୁ ଆମ୍ଭେ ଷୋଳସହ୍ର ଗୋଇ
ଡଣାଏ ମାର ଯଶୋଦା କୋଳରେ ଖଟାଇ
ଉଦ୍ଧବ ହେ !
ଡାକିଲେ ଶ୍ରୀଧର
ଢେଦି ଯଶୋଦାଙ୍କୁ ଫେଡ଼ି ଦେଲେ ଚକ୍ରଧର । ୧୨ ।

ତାଙ୍କ ଯାହା ବୋଇଲେ ତା ବରଜନେହେଁ ପାଳ
ତୋଳା ପୂରାଇଣ ନ ଦେଖିଲୁଁ ବନମାଳୀ
ଉଦ୍ଧବ ହେ !
ତଙ୍କ ଗାରଡ଼ିଆ
ତର ଭାବେ ଲକ୍ଷ୍ମୀ ଖଣ୍ଡି ନ ପାଇଲେ ଛୁଆ । ୧୩ ।

ତୋଷକଲ ଅମୃତ ଯେଣେ ଉଦ୍ଧାର ଯତନେ
ଥାଳେହେଁ ଗୋପୀଙ୍କି ତେଣେ କଲେ ଭଗବାନେ
ଉଦ୍ଧବ ହେ !
ଥର୍ମେ ନାଶ ଯାଇ
ଥାଳେ ନାଶଗଲୁଁ ଅମେ ଗୋପପୁର ଗୋଇ । ୧୪ ।

ଅନୁଭବୀ ହୋଇ ନ ଜାଣି ଗୋପୀଙ୍କ ଦୁଖ
ଆଶାଭଗ୍ନ ପକ୍ଷୀ ପ୍ରାଏ କଲେ ପଦ୍ମମୁଖ
ଉଦ୍ଧବ ହେ !
ଅନଙ୍ଗଙ୍କ ଜାଲା
ଅନୁବ୍ରତେ ଦହୁଅଛୁ ପ୍ରଭୁ ନନ୍ଦବାଲା । ୧୫ ।

ତନପୁରେ କେତେ କେତେ ପୁରୁଷ ନାହାନ୍ତି
ତରୁଣ ତନସ୍ଥ ଶ୍ୟାମ କେହୁ ନ ଦିଶନ୍ତି
ଉଦ୍ଧବ ହେ !
ତପ ଯେବେ ଥାନ୍ତା
ତୁଳସୀ ବହୁଭ କର୍ପା ଗୋପରୁ ଯାଆନ୍ତା । ୧୬ ।

ଥିଲେ ଯେତେ ଧନ କୁଣ୍ଡ ଗୋପପୁରେ ରହି
ଥିଲୁଁ ଯାକ ଲକ୍ଷ୍ମୀ ଥିଲା ଚତୁର୍ବର୍ଗ ହୋଇ

ଉଦ୍ଧବ ହେ !
ଥାନ ତରାଉଛନ୍ତି
ଥାବର ବନ ପର୍ବତ ମାଡ଼ିପଡ଼ୁଅଛନ୍ତି । ୧୭ ।

ଦୟାଳୁ ହୋଇଣ କୃଷ୍ଣ ଦାରୁଣ ହୋଇଲେ
ଦୀନବନ୍ଧୁ ଯଶୋଦାଙ୍କୁ ଛାଲେ ମୂରୁଛଲେ
ଉଦ୍ଧବ ହେ !
ଦୀନବନ୍ଧୁ କେଉଠେ ?
ଦୁହିତା ତରୁଣୀ ଅମ୍ଭେ ନ ପଡ଼ିଲୁଁ ମନେ । ୧୮ ।

ଧୂର ନନ୍ଦେ ମଧୁବନ ଯମୁନା ସେ ପାର
ଧାଇଁ ଯାଇଁ ଗୋପୀ ଅମ୍ଭେ ଅଧି ହ ନ ପାରୁ
ଉଦ୍ଧବ ହେ !
ଧର୍ମ ନ ଲଙ୍ଘୁଛୁଁ
ଧରଣୀପତିର ଆଜ୍ଞା ପ୍ରତିପାଳୁଅଛୁଁ । ୧୯ ।

ନାମ ରୂପ ଗୁଣ କର୍ମ ଏ ଶ୍ୱର ଭଣ୍ଡାର
ନିରନ୍ତରେ ଅଶ୍ରେ କର ହୋଇଲୁଁ ଅନ୍ତର
ଉଦ୍ଧବ ହେ !
ନିରସ୍ତୁ କରୁଣା
ନାରଦାଦି ମୁନିମାନେ କହନ୍ତି କହ୍ନୁ ବଣା । ୨୦ ।

ପରମ ପୁରୁଷ ପ୍ରୀତି କଲେ ଏବେ ମାୟା
ପ୍ରମାନନ୍ଦ ପ୍ରଭୁ ଗଲେ କରୁଣା ନିର୍ଦ୍ଦୟା
ଉଦ୍ଧବ ହେ !
ପ୍ରମାଣ ବଚନ
ପଞ୍ଚ ଅଗ୍ନି ପୋଡ଼ୁଥାଇ ହୃଦୟ ଚେତନ । ୨୧ ।

ଫେଡ଼ିଲୁଁ ଅନ୍ତର ଲଜ୍ଜା ଭଜିଲୁଁ ତାହାଙ୍କୁ
ଫାଟିଲା ଆମ୍ଭ ଅଦୃଷ୍ଟ କହିବୁଁ କାହାକୁ
ଉଦ୍ଧବ ହେ !
ଫୁରୁଣା ଲାଗିଲା
ଫେଡ଼ିଣ କହିଲୁଁ କୃଷ୍ଣ ନଚଏଁ ଛାଡ଼ିଲା । ୨୨ ।

ବେଣୁଧର ଯେତେଁ ଦିନେ ଜାତ ନନ୍ଦଘରେ
ବ୍ରହ୍ମାଦି ଦେବତା ଥିଲେ ଏହି ଗୋପପୁରେ
ଉଦ୍ଧବ ହେ !
ବଡ଼ ଆଶା ଥିଲା
ବିହିର ବିଯୋଗେ ଯାତା ଦେଖାଇ ହରିଲା । ୨୩ ।

ଉଦ୍ୟ ହେଲେ ଅପରାଧୀ ପ୍ରଭୁ କ୍ଷମାନିଧି
ଉଦ୍ୟର ଭାବନା ନ ରଖିଲେ ଦୟାନିଧି
ଉଦ୍ଧବ ହେ !
ଭଜିଲାକୁ ଭଜି
ଭଜିଲେ କେମନ୍ତେ ନ ଭଜିବେ ଦୟାନିଧି । ୨୪ ।

ମାଧବ ହେ ଯେଡ଼ ପାରେ ମନ ଅଭିମାନ
ମନେ ଯାହା କଲ୍ଲେ ତାହା ଜାଣେ ଭଗବାନ
ଉଦ୍ଧବ ହେ !
ମନରୁ କି ଯାଇ
ମନୋରମ୍ୟ ହୋଇ ସର୍ବ ଘଟେ ପୂରିଥାଇ । ୨୫ ।

ଯେତେ ଦିନେ ବିଚ୍ଛେଦ ହେ ଯେମନ୍ତ ବେଭାର
ଜଗନ୍ନାଥ ଦୟା ଅଛି ନାହିଁ ଗୋପପୁର

ଉଦ୍ଧବ ହେ !
ଯାଉ ଏକମନ
ଯେତେବେଳେ ଇଚ୍ଛା ତେତେବେଳେ ଦରଶନ । ୨୬ ।

ରଇଜନରେ ଜାଣିଲେ କୃଷ୍ଣଙ୍କ ପ୍ରତେ ନାହିଁ
ରସ ରଙ୍ଗ କରି ଶେଷ ଗଲେ ଉପୁଜାଇ
ଉଦ୍ଧବ ହେ !
କର୍ମେ ନାହିଁ ଶଙ୍କା
ରାଧିକାକୁ ଭଣ୍ଡି ଛପାଁ ନଇଲେ ଶ୍ରୀବତ୍ସି । ୨୭ ।

ଲକ୍ଷ୍ମୀପତି ଅନ୍ତର୍ଯାମୀ ସ୍ୱୟଂ ଆତ୍ମାରାମ
ଲଭ୍ୟ ଭୂତେ ତୁମ୍ଭଙ୍କୁ ଦେଖିଲୁଁ କୃଷ୍ଣସମ
ଉଦ୍ଧବ ହେ !
ଲଭିଲୁଁ କାରଣ
ଲଭିଲେ ଅହଲ୍ୟା ପାଦ କଲୁଁ ସ୍ମରଣ । ୨୮ ।

ବସୁଦେବର ତ ବାସୁଦେବ ନନ୍ଦସୁତ
ବଚନେ ବୋଇଲେ ଯେ ଯଶୋଦା ଅମ୍ଭ ମାତ
ଉଦ୍ଧବ ହେ !
ବନ୍ଧୁ ଅମ୍ଭ ଗୋଇ
ବଚନରୁ ଫିଟିଲେ ବଢ଼ାଇ ନୋହେ କେହି । ୨୯ ।

ଶ୍ରୀବତ୍ସ ଲାଞ୍ଛନ ଦେଖି ମନେ ଭାଳୁଥାଇ
ଶିରୀକାନ୍ତ କରୁଣ ହୃଦରେ ଛନ୍ନି ବହି
ଉଦ୍ଧବ ହେ !
ଶିରେ ଯୋଡ଼ି କର
ସାନନ୍ଦ ମନରେ ତାଙ୍କୁ ମାଗୁଅଛୁଁ ବର । ୩୦ ।

ଶୁଣିଣ ଗୋପୀଙ୍କ ଭକ୍ତି ବଚନ ଉଦ୍ଧବ
ଶୋକେ ଗଦଗଦ ହୋଇ ପୁଲକିତ ଭାବ
ଗୋପୀମାନେ ଗୋ !
(ଶୁଣ) ବରଜ ସୁନ୍ଦରୀ !
ଶ୍ରୀମୁଖ ସମ୍ବାଦ ଯାହା କହୁଛନ୍ତି ହରି । ୩୧ ।

ଷକଳ ଗୋପୀନ୍ତ ସାଇ କହନ୍ତି ଏମନ୍ତ
ଷବୁ ହୋଇଁ ଜନ୍ମ ଅମ୍ଭ ଭାଗ୍ୟର ଅର୍ଥ
ଯେ ଅମ୍ବର
ନିଜକର୍ମ ଗୋଈ
ଷଖୀଙ୍କର ନାମ ଗୋପୀନାଥ ନାମ ବହି । ୩୨ ।

ହରଷ ହୋଇଲେ ଗୋପୀ ପ୍ରବୋଧ ବଚନେ
ହରି କରୁଣା ଉଦ୍ଧବ ଅଛି ଅମ୍ଭ ମନେ
ଉଦ୍ଧବ ହେ !
ହରଷ ବଚନ
ହରଷେ ମେଲାଣି ଦେଲୁଁ ଯାଅ ମଧୁବନ । ୩୩ ।

କ୍ଷେମେଣ ସକଳ ଗୋଈ କରନ୍ତି ମଙ୍ଗଳ
ଛିଛିନେ ଉଦ୍ଧବ ତୁମ୍ଭେ କର ଅନୁକୂଳ
ଉଦ୍ଧବ ହେ !
କ୍ଷମାରେ କହିବ
କ୍ଷୁଦ୍ର ବୁଦ୍ଧି କୃଷ୍ଣିଅଙ୍କୁ କ୍ଷ ଅଜ୍ଞା ହୋଇବ । ୩୪ ।



# କୃଷ୍ଣ ବିଚ୍ଛେଦ ଚଉତିଶା

---

ଏଥି ଜାତର ପ୍ରାଣର ଗୀତଟି କୃଷ୍ଣବିଚ୍ଛେଦ ଚଉତିଶା ଅନ୍ୟତମ । ଏହାର ସ୍ୱତନ୍ତ୍ରତା ସ୍ୱର ସହିତ ଭାବ ଏତେ ମଧୁର ଛନ୍ଦରେ ଗ୍ରଥିତ ହୋଇଅଛି ଯେ ଲୋକ ମାନଙ୍କ ଚିତ୍ତକୁ ଅତି ଟାଣେ । ପତ୍ରିକାର କଥା ଅଧୁନା ଯୁଗରେ ଏ ଚଉତିଶା ପରି କେତେଟା ଗୀତ ରଚିତ ହୋଇଅଛି ଯାହାକୁ ସମସ୍ତ ଜାତିର ସମ୍ପଦ କୁହାଯାଇ ପାରେ ।

କୃଷ୍ଣକଥା ମନେ ଗୁଣି
କାମେ ଅଶକତ ବ୍ରଜ-ତରୁଣୀ ଯେ
କହନ୍ତି କାକୁସ୍ତବାଣୀ
ମୋ କୃଷ୍ଣ ଯେ । ୧ ।

ଖଞ୍ଜୁଥିଲୁଁ ଶ୍ରୀଚରଣେ
ଖୋଜ ବୁଲୁଥିଲୁ ଶ୍ରୀବୃନ୍ଦାବନେ ଯେ
କ୍ଷଣେ ନ ପଡ଼ିଲୁଁ ମନେ
ମୋ କୃଷ୍ଣ ଯେ । ୨ ।

ଶୃଙ୍ଗାର ମଣି ଗୋବିନ୍ଦ
ଗଲେ ଅସ୍ତାନ୍ତ ଧେନ ଗୋବୃନ୍ଦ ଯେ
ଗୋକୁଳ-ନାୟକ ଗଣ
ମୋ କୃଷ୍ଣ ଯେ । ୩ ।

ଘର ଯୋଉବନ ହେଲା
ଘନ-ବରନାକୁ କେ ଯେନଗଲା ଯେ
ଙ୍ଗୋଉଁ ଧନ ନ ସହଲା
ମୋ କୃଷ୍ଣ ଯେ । ୪ ।

ନଶ୍ୱର କରଣ ଗଲେ
ନେଉଣ୍ଠ ସନ୍ଦେଶ କିଛି ନ ଦେଲେ ଯେ
ନୀର ବିନୁଁ ମୀନ ମଲେ
ମୋ କୃଷ୍ଣ ଯେ । ୫ ।

ଚନ୍ଦ୍ରମା ବଦନ ତାର
ଚଉଷଠି-ନାରୀଙ୍କ ଜୀବ ଆଧାର ଯେ
ଚୋର କରିନେଲେ ଚୋର
ମୋ କୃଷ୍ଣ ଯେ । ୬ ।

ଛଇଳ ସୁନ୍ଦର କାହ୍ନ
ଛୁଆ ମୃଗ ପ୍ରାଏ ବେନି ନୟନ ଯେ
ଷଣେ ଷଣେ ଅଚେତନ
ମୋ କୃଷ୍ଣ ଯେ । ୭ ।

ଯେତେ ଅଛିଲେ ଅସୁର
ଯଶୋଦା-ନନ୍ଦନ କଲେ ସଂହାର ଯେ
ଯଶ ଥୋଇ ତିନିପୁର
ମୋ କୃଷ୍ଣ ଯେ । ୮ ।

ଝମଣେ ତାଙ୍କୁ ନ ଦେଖି
ଝୁରୁ ଥାଇ ଅମ୍ଭ ଏ ବେନି ଆଖି ଯେ
ଏବେ କି କରିବା ସଖି ?
ମୋ କୃଷ୍ଣ ଯେ । ୯ ।

ନିର୍ମଳ ବଦନ ତା'ର
ନୀରେ ବରଷିବ ଅମ୍ଭ ଶରୀର ଯେ

ନାଚିବେ ଝଲ ଅମ୍ବର
ମୋ କୃଷ୍ଣ ଯେ । ୧୦ ।

ଟାଣପଣ ଯେତେ ଥିଲା
ଟେକି ଗୋବର୍ଦ୍ଧନ ଗିରି ଧଇଲା ଯେ
ଟସକର ଏବେ ହେଲା
ମୋ କୃଷ୍ଣ ଯେ । ୧୧ ।

ଠାବ କରି ନ ପାରିଲୁଁ
ଠକେ ଗୋଇ ଅମ୍ଭେ ଅନାସ୍ତ ହେଲୁଁ ଯେ
ଠୁଲ ନିଧି ହରାଇଲୁଁ
ମୋ କୃଷ୍ଣ ଯେ । ୧୨ ।

ଡାକନ୍ତି ମୁରଲୀସ୍ୱନେ
ଡଙ୍କାରଡ଼ିଆ କି ମନ୍ତ୍ର ଜାଣେ ଯେ
ଡେଇଁ ଯାଇଁ ବୃନ୍ଦାବନେ
ମୋ କୃଷ୍ଣ ଯେ । ୧୩ ।

ଢମ୍ଭ ପଣେ ସେବିଥିଲୁଁ
ଢିଠିଆ ପୁରୁଷ ଢମେ ଭୁଲିଲୁଁ ଯେ
ଢାଳେ ନିଧି ହରାଇଲୁଁ
ମୋ କୃଷ୍ଣ ଯେ । ୧୪ ।

ଅଗୋ ସଖୀଜନେ ମିଳି !
ଅକୁଳ ହୋଉଛୁ ଅମ୍ଭର ଚିତ୍ତ ଯେ
ଅସି କର କୋଳାଗତ
ମୋ କୃଷ୍ଣ ଯେ । ୧୫ ।

ତ୍ରିଭଙ୍ଗି ରୂପ ଶୃଙ୍ଗାଣୀ
ତରଳ ହୋଏ ନବଯଉବନୀ ଯେ
ତନୁର ଅଙ୍ଗ ପଦ୍ମନୀ
ମୋ କୃଷ୍ଣ ଯେ । ୧୬ ।

ଥିଲୁ ଦିନେ ବୃନ୍ଦାବନେ
ଥିର ନୋହେ ମନ ନନ୍ଦ ସଦନେ ଯେ
ଥକିତ ମୁରଲୀ ସ୍ୱନେ
ମୋ କୃଷ୍ଣ ଯେ । ୧୭ ।

ଦଇବ କି ଦୁଖ ଦେଲା
ଦରଦ୍-ନଥିବ କେ ଘେନିଗଲା ଯେ
ଦିବସ ଅନ୍ଧାର ହେଲା
ମୋ କୃଷ୍ଣ ଯେ । ୧୮ ।

ଧରିଇ ନେଲା ରାଜନ
ଧରିଥିଲୁଁ ତାଙ୍କ ପଦ୍ମ ଚରଣ ଯେ
ଧାଡ଼ାକଲା ଉନ୍ମାଦନ
ମୋ କୃଷ୍ଣ ଯେ । ୧୯ ।

ନବୀନ ସୁନ୍ଦର ଶ୍ୟାମ
ନବଯୁବତୀଙ୍କ ନୂଆ ମଦନ ଯେ
ନ ଦେଖି ଗଲା ଜୀବନ
ମୋ କୃଷ୍ଣ ଯେ । ୨୦ ।

ପୀରତି ଅନଳ ହେଲା
ପତଙ୍ଗ ଯେସନେ ଉଡ଼ି ପଡ଼ିଲା ଯେ

ପ୍ରାଣ ତ ତହିଁ ନ ଗଲା
ମୋ କୃଷ୍ଣ ଯେ । ୨୧ ।

ଫୁଟିଥାଇ ପଦ୍ମବନ
ଫୁରୁଣା ହୋଅଇ ଭ୍ରମର ମନ ଯେ
କରୁଥାଇ ସୁଧାପାନ
ମୋ କୃଷ୍ଣ ଯେ । ୨୨ ।

ବେଦନା ଜାଣେ ଅପାର
ବନେ ବୁଲୁଥିଲୁଁ ଧେନୁ ସଙ୍ଗର ଯେ
ବଶ ହୋଇଥିଲୁଁ ତାର
ମୋ କୃଷ୍ଣ ଯେ । ୨୩ ।

ଭଲା କଣ୍ଟକର ଗଲେ
ଜଳ ଭସା ଦେଇ ଯାଇ ରହିଲେ ଯେ
ଭଲା ତ୍ରିଲୋଚଣ ଗଲେ
ମୋ କୃଷ୍ଣ ଯେ । ୨୪ ।

ମଥୁରା ସମସ୍ତେ ଯିବା
ମହାପ୍ରଭୁ ପଣ ଶିରେ ଥୋଇବା ଯେ
ମରମ କଥା କହିବା
ମୋ କୃଷ୍ଣ ଯେ । ୨୫ ।

ଜାଣିଲୁ ମଥୁରା-ବାସୀ
ଯତନେ ଅଣିବା ଶ୍ରୀକୃଷ୍ଣ ଧରି ଯେ
ଯଶ ଥିବ ଭବ ପୁସି
ମୋ କୃଷ୍ଣ ଯେ । ୨୬ ।

ରସିକ ନାଗର ମଣି
ରସ କଉତୁକ ମନରେ ଗୁଣି ଯେ
ରୋଷେ ନ ଥସନ୍ତି ପୁଣି
ମୋ କୃଷ୍ଣ ଯେ । ୨୭ ।

ଲଜ୍ଜାଭୟ ଦୂରକର
ଲାବଣ୍ୟ-ନାୟକ ଆଣିବା ଧରି ଯେ
ଲୋକେ ଦେଖୁଥିବେ ପୂର
ମୋ କୃଷ୍ଣ ଯେ । ୨୮ ।

ବଳେ ଯେବେ ନ ଆସିବେ
ବନମାଳା ଦେଇ ବର ଆଣିବା ଯେ
ବଳେ କରାଇବା ଶୁଭେ
ମୋ କୃଷ୍ଣ ଯେ । ୨୯ ।

ଶଠ ଆସିବେ ଶ୍ରୀଧର
ଶଠେ ଚମ୍ପା ଦେବା ଶମ୍ଭୁ ଶିରର ଯେ
ଧାଙ୍ଗୀ ହୁଅ ଛନା ମୋର
ମୋ କୃଷ୍ଣ ଯେ । ୩୦ ।

ଶଠେ ଆସିବେ କହ୍ନାଇ
ଶରଦ-ଚନ୍ଦ୍ରମା ଆସିବେ ଉଇଁ ଯେ
ଶଠେ ଚମ୍ପା ଫୁଟିବଇଁ
ମୋ କୃଷ୍ଣ ଯେ । ୩୧ ।

ସଖୀଏ ଥାଇ ବୋଇଲେ
ସୁଫଳ ଏ କଥା ହେଉ ବୋଇଲେ ଯେ

କ୍ଷଣକେ କରିବା ଲୀଳା

ମୋ କୃଷ୍ଣ ଯେ । ୩୨ ।

ହରଷ ହୋଇଣ ଗୋଈ

ହରଷେ ଯେ ଯାହା ଭୁବନେ ଯାଇ ଯେ

ହରିହର ନାମ ଧ୍ୟାଇ

ମୋ କୃଷ୍ଣ ଯେ । ୩୩ ।

କ୍ଷୀଣ ହେଲା ହନୁମାନ

କ୍ଷଣକେ ଭଣଇ ଗୋପଜୀବନ ଯେ

କ୍ଷଇଲ ନିଧିର ଗୁଣ

ମୋ କୃଷ୍ଣ ଯେ । ୩୪ ।



# ନବଘନ ଚଉତିଶା

---

ଉତ୍କଳୀୟ ପ୍ରାଣରେ ସହଜ ଆନନ୍ଦଦାୟକ ଛନ୍ଦରେ ରଚିତ ଏହି ନବଘନ ଚଉତିଶା ବହୁଦିନ ହେଲା ବିସ୍ମୃତି ଗର୍ଭରେ ଲୁଚି ଯାଇଥିଲା । ଏହାର ପଦାବଳୀ ଏତେ ସରଳ ଓ ଏତେ ମଧୁର ଯେ ପଢ଼ିଲା ମାତ୍ରେ ଏହାର ପଦ ଝଙ୍କାରରେ ହୃଦୟ ଦ୍ରବିଯାଏ ।

କୃଷ୍ଣ କଲେ ପ୍ରୀତି ଚନ୍ଦ୍ର
କହଇ ଘନକୁ ଗୋପଯୁବତୀ
ନବଘନ !
ନଇଲେ ସୁଖ ସମ୍ପତ୍ତି
ନବଘନ । ୧ ।

ଖାଇବା ଖେଳିବା ସୁଖ
କ୍ଷଣକେ ଦେଖିଲେ ପଙ୍କଜମୁଖ
ନବଘନ !
ଦେଇଗଲେ ନାନା ଦୁଃଖ
ନବଘନ । ୨ ।

ଗୋବର୍ଦ୍ଧନ ଇନ୍ଦ୍ର ଛଳରେ
ଗିରିକି ଟେକିଲେ ବାମଭୁଜରେ
ନବଘନ !
କେ କରି ପାରେ ସଂସାରେ
ନବଘନ । ୩ ।

ଘନ ଶାମଳଅଛ କାହ୍ନୁ,
ଘନ ଘନ କର ବଜାଉ ବେଣୁ
ନବଘନ !
ଘଡ଼ିଏ ନ ଯାଏ ମନୁ
ନବଘନ । ୪ ।

ନୟନେ ନ ଦେଖୁ ଦଣ୍ଡେ
ନ ରହେ ଜୀବନ ଅମ୍ଭର ପିଣ୍ଡେ,
ନବଘନ !
ବଜ୍ର କି ପଡ଼ିଲା ମୁଣ୍ଡେ
ନବଘନ । ୫ ।

ଚନ୍ଦ୍ରାମଣି ଅମ୍ଭ ପ୍ରୀତ
ଚଉଦ ଭୁବନ ଲୋକେ ଜାଣନ୍ତି
ନବଘନ !
ଅପ୍ରୀତରେ କଲେ ପ୍ରୀତ
ନବଘନ । ୬ ।

ଛାଡ଼ି ଗଲ ଧନୁ ଧର
ଛାଡ଼ିଲେ ମରବୁଁ ଗୋପ ଗୁଆଳୀ
ନବଘନ !
ପ୍ରୀତ କଲେ ଛଳ ଛଳ
ନବଘନ । ୭ ।

ଯଶୋଦା ନନ୍ଦନ କାହ୍ନୁ
ଜୀବ ଥିବା ଯାକେ ନ ଛିଡ଼ିବେ ମନୁ

ନବଘନ !
ଜୀବଗଲେ ଯିବେ ମନୁ
ନବଘନ । ୮ ।

ଝାଡ଼ିସଙ୍ଗିଅର ସଙ୍ଗେ
ଝସକେତନର ଅମିୟୁ ରଙ୍ଗେ
ନବଘନ !
ମିଶିଯିବୁ ତାଙ୍କ ସଙ୍ଗେ
ନବଘନ । ୯ ।

ନ ରୁଚଇ ଘର ବର
ନବଘନଅର ମୁରଲୀ ସ୍ୱର
ନବଘନ !
ଶୁଣି ହେଲୁ ଜର ଜର
ନବଘନ । ୧୦ ।

ଟାଣେ ବାନ୍ଧଥାଇ ଯୁଡ଼ା
ଟକଏ ଟକଏ ମଲ୍ଲୀ ପାଖୁଡ଼ା
ନବଘନ !
ଖୋସିବାରୁ ଘରବୁଡ଼ା
ନବଘନ । ୧୧ ।

ଠାଇ ଅଛୁ କାହିଁ ଶିଖି
ଠାରୁ ଥାଇ ଖଣ୍ଡ ହୃଦରୁ ଅଖି
ନବଘନ !

ଧଇର୍ଯ୍ୟ ନ ପାରୁ ଭଜି
ନବଘନ । ୧୨

ଡର ନ ଥାଇ କାହାକୁ
ଚେଇଁ ପଡ଼ୁଥାଉ ତାର ବୋଲକୁ
ନବଘନ !
ଧାଇଁ ଥାଉ ଅରଣ୍ୟକୁ
ନବଘନ । ୧୩ ।

ଡାଲେଙ୍କେ ଅମ୍ଭେ ସାହସୀ
ତମ୍ପଚଣ ଦେଲୁ ବାଳୁତରାଣି
ନବଘନ !
ଏବେ ତ ମରୁଛୁଁ ଭୁପି
ନବଘନ । ୧୪ ।

ଅଲପ ସେନେହ କଲ
ଅଧରୁ ଅମୃତ ଚଖାଇ ଦେଲ
ନବଘନ !
ମୋହିନୀ ଲଗାଇ ଗଲ
ନବଘନ । ୧୫ ।

ଭୁଟି ବୋଲୁଥାଇ ଯେବେ
ତହିଁର ଶୋଚନା ନ ଥାଇ ତରେ
ନବଘନ !
ଶୁନ୍ତ କହୁଥାଇ ତେବେ
ନବଘନ । ୧୬ ।

ଥୋକପଣ ଶିରୋମଣି
ଅଣ୍ଟ ଚର ବକା ମାରିଲେ ପୁଣି
ନବଘନ !
ଚଉଦ ସେ କଥା ଶୁଣି
ନବଘନ । ୧୭ ।

ଦୁଷ୍ଟେ ନାଶି ପାଳେ ସନ୍ଥ
ଦାରୁଣ ଦସ୍ୟୁଙ୍କୁ ସେ କୋଟିନାଥ
ନବଘନ !
ଦୁଃଖ ହୋଇଲୁଁ ଅନାସ୍ତ
ନବଘନ । ୧୮ ।

ଧର୍ମ କେମନ୍ତେ ସହନ୍ତି ?
ଧାରି ନେନ୍ତ୍ର ଅସ୍ତ୍ର କ୍ଷୀର ଶତ୍ରୁନ୍ତି
ନବଘନ !
ମଙ୍ଗଳ ଡାକ ହୋଉଛନ୍ତି
ନବଘନ । ୧୯ ।

ନନ୍ଦନ କରଣ ଗଲେ
ନ ରହ ଅସିରୁ ବୋଲି ବୋଇଲେ
ନବଘନ !
ସେ କଥାଇଁ ଘୋଷୋଇଲେ
ନବଘନ । ୨୦ ।

ପାଇଲେ ନଗର ନାଶ୍ଚ
ପଠାଇଲେ ବେଗେ ସ୍ମୋରେ ଘୋଷୋଇ

ନବଘନ !

ନୂଆ ପ୍ରୀତି ପର୍ କରି

ନବଘନ । ୨୧ ।

ଫେଡ଼ି ନ କହୁଁ କାହାକୁ

ଘୂଳ ତୋଳ ନେଲେ ବୃନ୍ଦାବନକୁ

ନବଘନ !

ସେ ଦିନୁ ଜାଣିଲୁଁ ତାଙ୍କୁ

ନବଘନ । ୨୨ ।

ବଧୂସ ଗରବେ ପଡ଼ି

ବୃନ୍ଦାବନଅନ୍କୁ ସେ ଭସେ ଲୋଡ଼ି

ନବଘନ !

କୁଳ ଶୀଳ ଲଜ୍ଜା ଛଡ଼ି

ନବଘନ । ୨୩ ।

ଭାଙ୍ଗିଲେ ସବୁ ଭରସା

ଭବବନୋଦଅ ଦେଲେ କି ଦଶା

ନବଘନ !

କରି ଗଲେ ଲୋକହସା

ନବଘନ । ୨୪ ।

ମତ୍ତ ମୟୂର ଡାହୁକ

ମେଘ ଘଡ଼ଘଡ଼ି ମଣ୍ଡୂକ ଡାକ

ନବଘନ !

କାମକୁ ନ ଥାଇ ଦକ

ନବଘନ । ୨୫ ।

ଜହ୍ନ ଅଛି ଅମ୍ଭ ଘର
ଯାଉଥାଇ ପାହି ରଜନୀ ରାତ
ନବଘନ !
ବୃଷ୍ଟି ସଙ୍ଗେ ରଙ୍ଗେ ମାତ
ନବଘନ । ୧୬ ।

ରଙ୍ଗେ ଅସ୍ତଥାନ୍ତି ବନ୍ୟ
ପଛେ କଳା ଧଳା ଆଗରେ ଧେନୁ
ନବଘନ !
ଶୃଙ୍ଗ ଉଦକଇ ତନୁ
ନବଘନ । ୧୭ ।

ଲଲାଟେ କସ୍ତୁରୀ ଚିତା
ଲୋଟୁଥାଇ ନାଚେ ଗଜମୁକୁତା
ନବଘନ !
ଭଙ୍ଗ ଦେବେ ପଦ୍ମବ୍ରତା
ନବଘନ । ୧୮ ।

ବ୍ୟାଘ୍ର ଲଖ ଦେମ ଛଣ୍ଡି
ତ୍ରିଭୁଲ ମୁକୁତା ଗୋଟିକି ଗୋଟି
ନବଘନ !
କଣ୍ଠତଟେ ଥାଇ ଯୋଟି
ନବଘନ । ୧୯ ।

ଶ୍ରବଣେ ମଣି କୁଣ୍ଡଳ
ସୁନ୍ଦର ଦିଶଇ ସରୁ କଟୁଲ
ନବଘନ !

ଜାଣଇଁ ବର୍ଷେକ ବରୁ

ନବଘନ । ୩୦ ।

ସେ ଯେଉଁ ଅପୂର୍ବ ରସ

ସାରସ ବଦନ ଅମୃତ ରସ

ନବଘନ !

ବରଷଇ ରସ ରସ

ନବଘନ । ୩୧ ।

ସମସ୍ତେ କହନ୍ତି ବାଣୀ

ସତେ କି ଆସିବେ ମୋ ଚକ୍ରପାଣି

ନବଘନ !

ସେବକ ତା ମନ ଜାଣି

ନବଘନ । ୩୨ ।

ହରି ଶୁଣିମାନ ଗୁଣି

ହଠ ହୋଇବ କି ଗୋପକାମିନୀ

ନବଘନ !

ହସୁଅ ମୁରଲୀପାଣି

ନବଘନ । ୩୩ ।

କ୍ଷମେ ପାଇ ପଦ୍ମପାଦ

ଛନ୍ଦେ ଭଣିଲେ ପରମାନନ୍ଦ

ନବଘନ !

କରମ ମୋ ବଡ଼ ମନ୍ଦ

ନବଘନ । ୩୪ ।

---

# କୃଷ୍ଣ ବିରହ ଚଉତିଶା

କୃଷ୍ଣ ବିରହ ଚଉତିଶା ଉତ୍କଳର ପ୍ରଚଳିତତମ ଚଉତିଶାମାନଙ୍କ ମଧ୍ୟରୁ ଅନ୍ୟତମ । ଏହାର ଭାଷା ଉପରେ ପ୍ରାଚୀନତାର ମୁଦ୍ରା ବେଶ ଭଲରେ ଅଙ୍କିତ ଅଛି । ବିରହର ଉତ୍କଟତା ପ୍ରାଚୀନ କବିରେ କବ ଗୋକୁଳ ନରେନ୍ଦ୍ର ଯେପରି ପ୍ରକାଶ କରିଅଛନ୍ତି ତହିଁରୁ ଅଧୁନିକ ବର୍ତ୍ତମାନଙ୍କର ଯଥେଷ୍ଟ ଶିଖିବାର ଅଛି । ଓଡ଼ିଆ ଭାଷାର ମୌଳିକ ପ୍ରକାଶିକା ଶକ୍ତି ପ୍ରଚଳିତ କବିତାରେ ଅନୁଧ୍ୟେୟ । ଭାଷା ଦିଗରୁ ଦେଖିଲେ ଅନେକ ଦୂରରୁ କବିତା, ସେମାନଙ୍କର ସକଳ ଗୁଣ ସତ୍ତ୍ୱେ, ବିଦେଶୀ ଛନ୍ଦରେ ଚଳା ।

କମଳ ଲୋଚନ କୃଷ୍ଣ ମନ ଅନୁରାଗେ
କହନ୍ତି କୋମଳ ବାଣୀ ଉଦ୍ଧବର ଆଗେ
କୁରଙ୍ଗୀ ନୟନୀ ରାଧା ବିରହ-ଅନଳେ
କୁସୁମ-ବିଶିଖ ମୋତେ ଦହୁଅଛି ବଳେ । ୧ ।

ଖେଳ କଉତୁକ ଆଦି ନାନାବିଧ ରସ
ଖଣେହେଁ ମନକୁ ମୋର ନ କରେ ଉଲ୍ଲାସ
ଖଞ୍ଜନ-ନୟନୀ ଗୁଣ ଗୁଣି ନିଶିଦିନ
ଖେଦ-ଜଳଧିରେ ମୋର ନିମଜ୍ଜିଲା ମନ । ୨ ।

ଗହନେ ବସିଲେ ଉଖଗ୍ରାନ୍ତୁ ସୁଧା ସଙ୍ଗେ
ଗାଉଥି ମୁଁ ରହିଲି ନାନା ରତି ରସ ରଙ୍ଗେ
ଗାଢ଼ ଆଲିଙ୍ଗନ ରାମା କରୁଥିଲା ଯେତେ
ଗଳିଲ ପ୍ରାସ୍ୟେକ ସ୍ୟେବେ ଧାରୁଅଛୁ ମତେ । ୩ ।

ଘୋରଇ ବିଷମ ଶର ପଡ଼ି ମୋର ଅଙ୍ଗ
ଘୋର ବିଷାଇଲୁ ଶରେ ଯେସନେ କୁରଙ୍ଗ

ଘନ ବନେ ଶ୍ୟାମା କରୁଅଛୁ ଯେତେ ଭାବ
ଘେନଲେ ତ ନିମିଷେ ରହିବ ମୋର ଜୀବ । ୪ ।

ଙାଚଳ-ନୟନୀ ବିନୁ ନ ରୁଚଇ ଅନ୍ନ
ନ ସହଇ ଅଙ୍ଗେ ମୋର ପବନ ଚନ୍ଦନ
ନିଶାକର କିରଣ ପାବକ ସମ ବହ୍ନି
ନ ରହିବ ଜୀବ ମୋର ନ ଦେଖିଲେ ସଖୀ । ୫ ।

ଚନ୍ଦ୍ରମା-ବଦନୀ ମୋତେ ଘେନ ଏକ ଦିନ
ଚୁମ୍ବି ମୋ ଅଧର ଯାହା ବୋଇଲୁ ବଚନ
ଚଞ୍ଚଳ ନୟନୀ ବିନୁ ନ ରହଇ ଜୀବ
ଚମକଇ ଚିତ୍ତ ମୋର ଚେତାଇ ତା ଭାବ । ୬ ।

ଛାଡ଼ିଣ ଅଇଲୁ ବିନୁ ଶଶୀମୁଖୀ ରାଧା
ଛଣ ଛଣକେ ମଦନ କରୁଅଛି ବାଧା
ଛାଡ଼ିବ ଜୀବନ ପୂର୍ଣ୍ଣ ଚନ୍ଦ୍ର-ମୁଖୀ ବିନୁ
ଛଟେ ନ ରହୁଣ ଛାଡ଼ି ଯା ରେ ମୋର ତନୁ ! ।୭।

ଯେତେ ଦିନ ନ ଦେଖିଲି ଚନ୍ଦ୍ରମାବଦନ
ଜୀବନ ଦହଇ ମୋର ଦାରୁଣ ମଦନ
ଜୀବନ ରହିଛି ଯେହ୍ନେ କଥା ମନେ ଘେନ
ଜୀବନଗଲେ ଦେଖିବ କୁରଙ୍ଗୀ-ନୟନୀ । ୮ ।

ଝର ଝର ନୟନରୁ ବହୁଅଛି ନୀର
ଝସକେତୁ-ଶର-ଘାତେ ଅବଶ ଶରୀର ।
ଝୁରଇ ପରାଣ ଶୁଣି ସୁମୁଖୀ-ସେନେହ
ଝାସିବ ଅନଳେ କଷ୍ଟେ ତେଜିବ ଯେ ଦେହ । ୯ ।

ନଳିନୀ-ନୟନ-ମୁଖୀ ନ ଦେଖି ମୋ ମନ
ନ ସହଇ ସୁଶୀତଳ ସୁଜନ ପବନ
ଜଣି ନିମିଷକ ନବ କୋଟି ଯୁଗ ସମ
ନେବ ଜୀବ ବୋଲି ଯେ ବସିରୁଅଛି କାମ ।୧୦।

ଟେକ ଟେକ ଉଦ୍ଧୁନ ବିମ୍ବାଧର ଜ୍ୟୋତି
ଟଳବ ତା ଦେଖି ମୁନି ଜନଙ୍କର ମତି
ଟାଣ ମନସିଜ ଶରେ ଅଥିର ମୋ ତନୁ
ଟଳବ ଜୀବନ ଶଶୀମୁଖୀ ରାଧା ବିନୁ ।୧୧।

ଠୁଳ କରି ସକଳ ଲାବଣ୍ୟ ଆଣି ଧାତା
କଠିନ କରି ନିର୍ମିଲେ ସୁନ୍ଦର ଅଙ୍ଗ ତା
ଠଣ ସରସିଜ ମୁଖ ନ ଦେଖିଲି ଦିନୁ
ଠିକେ ବିଷମ ବିଶିଖ ଦହଇ ମୋ ତନୁ ।୧୨।

ଡମ୍ବକ ହେମବରଣୀ ନୟନେ ନ ଦେଖି
ଡଙ୍କଧର ଇଷୁବାଣେ ହୋଇଲି ମୁଁ ଦୁଃଖୀ
ଡୋଳେ ଯେଉଁଦିନ ମୁଁ ଦେଖିବି ତାର ମୁଖ
ଡେଳାଇବି ମନେ ମୋର ଅଛି ଯେତେ ଦୁଃଖ ।୧୩।

ଢାଳେ ହେ ସୁମୁଖୀ ମୁଖ ନ ଦେଖିବି ଯେବେ
ଢମ କହୁନାହିଁ ପ୍ରାଣ ଦେଇବି ମୁଁ ତେବେ
ଢମାଳ ବୋଲିଣ ସ୍ୱମା ବୋଲିଅଛି ଯାହା
ଢାଳେଦେଁ ନର ହେ ଜୀବ ସୁମଣିଲେ ତାହା ।୧୪।

ଅମଳ କମଳ ନେତ୍ର ନ ଦେଖି ତାହାର
ଅଣଅପୂର୍ବ ହୋଇଲା ଏ ମୋର ଶରୀର

ଅତନୁ ଅନଳ ମୋର ଦହୁଅଛି ଦେହ
ଅବଶ୍ୟ ତେଜିବ ଜୀବ ନ ଦେଖିଲେ ସହି । ୧୫ ।

ତାହାର ଅଧରୁ ମଧୁ ଯେ କରିବ ପାନ
ତ୍ରିଦଶ ସଦନରେ ତା ନ ରହିବ ମନ
ତରୁଣୀ ରତନ ରାଧା ନ ଦେଖିବ ଯେବେ
ତ୍ରିଭୁବନ ପଦ୍ଧ ପଣ ନ ଯୋଗାଇ ଦେବେ । ୧୬ ।

ଥିର ହୋଇ ସଂସାର ରଚନା ଛାଡ଼ି ବିହି
ଥିରେ ବସି ବହୁ ଯୁଗେ ନିର୍ମିଶିଲା ବହି
ଥିଲ ସରସିଜ ତାର ଶ୍ରୀଚରଣ ବେନି
ଥିଲ୍ଲକାଳେ ନିରନ୍ତରେ ହୃଦେ ଥାଇ ଯେନି । ୧୭ ।

ଦାରୁଣ ଦଇବ ଦୁଃଖ ଦେଲା ଏତେ ଦିନେ
ଦୀନ ହୋଇଅଛି ମୁହିଁ ସଖୀର ବିହୁନେ
ଦଇନ୍ୟ କରୁଛି ଶୁଣ ଏ ମୋର ବଚନ
ଦେଖାଅ କମଳମୁଖୀ ରଖ ମୋ ଜୀବନ । ୧୮ ।

ଧଇର୍ଯ୍ୟ ମୋ ଧସୁଅଛି କୁସୁମ ବିଶିଖ
ଧରିଅଛି ଜୀବ ତା ଚରଣ ପଦ୍ମମୁଖ
ଧରି କୋଳେ ସଖୀ ମୋତେ ବୋଲିଅଛୁ ଯାହା
ଧରିବ ଜୀବନ କାହ୍ନୁ ପାସୋରିଲେ ତାହା । ୧୯ ।

ନିରନ୍ତରେ ମନସିଜ କରଇ ପ୍ରହାର
ନ ଦେଖିଲି ଯଦି ଚନ୍ଦ୍ର ବଦନ ତାହାର
ନ କର ବିଳମ୍ବ ମିତ ଯାଅ ବେଗ ହୋଇ
ନିମିଷେ ତା ବିନୁ ମୋର ଜୀବ ନ ରହଇ । ୨୦ ।

ପଞ୍ଚଶର ଘାତ ଅଉଁ ନ ସହିବ ଦେହି
ପାରିଲେ ଉଦ୍ଧାର ବାରେ ଦେନି ଆସ ଯାଇଁ
ପରଭୃତ ବଚନୀଙ୍କ ଦେଖିବା ମୁଁ ଯେବେ
ପାପିଷ୍ଠ ମଦନ ଭସ୍ମ ତେଙ୍କିବ ମୁଁ ତେବେ ।୨୧ ।

ଫୁରୁଣା ହୋଇଣ ଶଶୀମୁଖୀ ସଖୀ ସଙ୍ଗେ
ଫାଇ କାଲ କେତେ ମୁ ରମିଲି ନାନାରଙ୍ଗେ
ଫାଟଇ ହୃଦୟ ମୋର ପଡ଼ିଲେ ସେ ମାନ
ଫାନ୍ଦରେ ପଡ଼ିଲେ ଶିଶୁ କୁରଙ୍ଗ ଯେସନ । ୨୨ ।

ବିଲମ୍ବ ନ କର ମିତ ଚଳଧି ବନ୍ଧନ
ବିଧୁମୁଖୀ ଆଗେ ମୋର କହ ନିବେଦନ
ବିକଳ ହୋଉଛି ମନ ତା ମୁଖ ନ ଦେଖି
ବିନାଶ କରଣ ମୋର ଆଣ ପ୍ରାଣସଖୀ । ୨୩ ।

ଭୁଜେ ଭୁଜେ ଉଡ଼ି ମୋତେ କୁରଙ୍ଗ-ଶାବାକ୍ଷି
ଭାବାଗରେ ଯେତେକ ବଚନ କହୁଅଛି ।
ଭାଳୁଅଛି ରଜନୀ ଦିବସେ ବସି ତାହା
ଭେଦିଲା ମରମେ ମୋର ଗାଢ଼େ ରତିନାହା ।୨୪।

ମାଳତୀ ନ ପାଇ ଯେସନେ ମଧୁକର ଦୁଖୀ
ମୋର ମନ ତେସନ ନ ପାଇ ଶଶୀମୁଖୀ
+ + + +
+ + + + ।୨୫।

+ + + +
+ + + +

ଯାର ବିନୁ କ୍ଷଣେହେ ନରହେ ମୋର ତନୁ
ଯୁଗ ଜାଣିଣ ଯାପେ ନିମିଷ ଅନୁମାନୁ । ୨୬ ।

ରସାଣେଲ୍ଲ କନକ ସମାନ ତାର କାନ୍ତି
ରଜନୀ-ନାଥଙ୍କୁ ନିନ୍ଦ କରେ ମୁଖ-ଭ୍ରାନ୍ତି
ରଢ ପଦ୍ମ କୂପ ଜିଣି ଉନ୍ନତ ଯୁଗ ଶୋହେ
ରମଣୀ ରତନ ରାଧା ମୁନି ମନ ମୋହେ । ୨୭ ।

ଲଲନା ରତନ ବନେ ଲତାନ୍ତରେ ଯାଇଁ
ଲୁଚିଲେ ମୋହର ମନ ନାଚିବାର ପାଇଁ
ଲେଉଟ ଲେଉଟ ନିବେଦନ ମୁଁ କଲି ଯେତେବେଳେ
ଲାଜ ତେଜି ଶଶୀ ମୁଖୀ ଧରି ମୋତେ କୋଳେ ॥

ବୃନ୍ଦାବନେ ବିପୁଳଜଘନା ଏକ ଦିନ
ବିବିଧ ବିଳାସ ରସେ ତୋଷିଲା ମୋ ମନ
ବସାଇ ଜାନୁରେ ରାମା ଯାହା ବୋଲିଅଛି
ବିସ୍ମର ସେ କଥା ମୋର ଜୀବନ ଯାଉଛି । ୨୯ ।

ସରସିଜ ପତ୍ର ମୁଖୀ ବଚନ ମାଧୁରୀ
ସୁମରଣ ଶରୀର ମୋ ହୋଉଛି ବିଦାରି
ସଖୀଙ୍କୁ ବଚନ ତୋତେ କହୁଅଛି ମିତ
ଶଶୀ ମୁଖୀ ବିନୁ ପ୍ରାଣ ତେଜିବି ନିଶ୍ଚିତ । ୩୦ ।

ସରୋଜ ନୟନା ସଙ୍ଗ ତେଜିଲାରୁ ଦିନୁ
ସତ ଯେ ବିରହ ଜ୍ୱରେ ଦହୁଛି ମୋ ତନୁ
ସୁମୁଖୀ ସେନହମାନ ସୁମରି ମନରେ
ସତତ କୁସୁମଶର ପଡ଼ଇ ଅନ୍ତରେ । ୩୧ ।

ଶୁଣ ଶୁଣ ମିତ୍ର ତୁ ଯେ ମୋହର ବଚନ
ସରସିଜ ମୁଖୀ ପ୍ରାଣ କରସି ଗମନ
ସଖୀର ଅଗରେ ମୋର କହଯାଇଁ ବାଣୀ
ସତେ ହେ ନିର୍ଦ୍ଦୟା ମୋତେ ନ କଲୁ ତରୁଣୀ ॥

ହରର ବଚନ ଶୁଣି ଉଦ୍ଧବ ହରଷ
ହୋଇଣ ବାହାର ବେଗେ ଗୋପରେ ପ୍ରବେଶ
ହରଣନୟନୀ ରାଧା ନିକଟକୁ ଯାଇ
ହରଷେ ହରି ସନ୍ଦେଶ କହନ୍ତ ମଣାଇଁ । ୭୩ ।

କ୍ଷେତ୍ରବର ନୀଳାଦ୍ରି-ନାୟକ ଦୀନବନ୍ଧୁ
କ୍ଷମାଶୀଳ ଶରଣ-ରକ୍ଷଣ କୃପାସିନ୍ଧୁ
କ୍ଷୀରାବ୍ଧି-ନନ୍ଦନୀ-ପତି କ୍ଷୁଦ୍ରର ଚରଣ
କ୍ଷଣକେ ଗୋକୁଳ ଚନ୍ଦ୍ର ପଶିଲ୍ଲ ଶରଣ । ୭୪ ।



# ଚନ୍ଦ୍ରାବଳୀ ଚଉତିଶା

ଚନ୍ଦ୍ରାବଳୀ ଚଉତିଶା ଛଡ଼ା କବି ଭ୍ରମରବରର ରଚନାର ଅନ୍ୟ କବିତା ମିଳିନାହିଁ । କିନ୍ତୁ ଏହି କ୍ଷୁଦ୍ର କବିତା ଦ୍ୱାରାହିଁ ସେ ଅମର ହୋଇ ରହିବେ । ତାଙ୍କର ଭାଷା ଓ ଭାବପ୍ରକାଶ ଭଙ୍ଗୀ ଉପରେ ପ୍ରାଚୀନତାର ସ୍ପଷ୍ଟ ମୁଦ୍ରା ଅଙ୍କିତ ରହିଅଛି । ସାରଲ୍ୟ ତାଙ୍କର ନିଜସ୍ୱ । ସାରଲ୍ୟ ଭିତରେ ଓଡ଼ିଆ ଭାଷାର ଯେଉଁ ମୌଳିକ ଶକ୍ତିର ବିକାଶ ଘଟିଅଛି ତାହା ଆଧୁନିକ ଯୁଗର ଯଶକାମୀ କବିମାନଙ୍କର ଅବଶ୍ୟ ମାର୍ଜିତବେଶ ପର୍ଯ୍ୟବେକ୍ଷଣର ବିଷୟ ।

କୃଷ୍ଣ ଗୁଣି ଗୁଣି ଚନ୍ଦ୍ରାବଳୀ
କରେ ଚିନ୍ତା, ସଙ୍ଗ ଗୋପୀ ମେଳି,
କହିଗଲେ କୃଷ୍ଣ ଆସିବେ ବୋଲିଣ
କପାଇଁ ନଇଲେ କହ ଆଳି । ୧ ।

ଖଳ ଲୋକଙ୍କ ପରସ୍ପେ ହୋଇ
ଖଣ୍ଡିଲେ ଏ ସୁଖ କାହିଁପାଇଁ ?
ଖିଆଇ ପ୍ରେମ-ମଧୁରୀ-ରସହିଁ
ପାସୋରିଲେ ମଧୁପୁରରେ ରହି । ୨

ଗୁଣମଣି ଗୁଣ ମନେ ଧ୍ୟାଇ
ଗଲ୍ଲବନ୍ ବନ ସରୁନାହିଁ
ଗୁପ୍ତପ୍ରୀତି ସୁରତି ରସ ଯେତେ
ହୃଦରେ ପଡ଼ିଲେ ହାଣିହୋଇ । ୩ ।

ଘଟଣେ ଶ୍ରୀମୁଖ ନ ଦେଖିଲେ
ଘଡ଼ିଏ ମୂରୁଚ୍ଛ ନୋହେ ଭଲେ

ଘନଶାମଳଅ ସଙ୍ଗେ ଯେତେ ପ୍ରୀତି
ମୂର୍ଚ୍ଛୁ କେ ପିଣ୍ଡେ ପ୍ରାଣ ଥିଲେ ! ।୪।

ନଥିବ ଏମନ୍ତ ହୋଇ କାହିଁ
ନନ୍ଦନ-ଧନଅ ପ୍ରାପ୍ୟେ ହୋଇ
ନୟନେ ଠାରି ନାଗରୀ ନାରୀଙ୍କର
ମନକୁ ଓଟାରି ବଳେ ନେଇ । ୫ ।

ଚତୁର—ଶେଖର-ବର କାହ୍ନ
ଚତୁର୍ଥୀ-ଶୃଙ୍କ-ନବଘନ
ଚିନ୍ତା-ସାଗରେ ଭସାଇ ଦେଇଯାଇଁ
ନଇଲେ ଜୀବର ଜୀବଧନ । ୬ ।

ଛନ୍ଦ-ଶିରୋମଣି ପ୍ରଭୁ ହୋଇ ।
ଛାଡ଼ିଲେ ଏ ଦୁଃଖ କାହିଁପାଇଁ ?
ଛାର କରମ ଏଡ଼େ ହୀନ ଅମ୍ଭର ।
ଦେଇ ଧନ ବିହି ନେଲା ଫେଇ । ୭ ।

ଜାଣିଥିଲୁଁ ଜୀବ ଯିବା ଯାଏଁ ।
ଯିବେ ନାହିଁ ଥିବେ ଯଦୁରାୟେ ।
ଜାଣିଲୁଁ ଏତେ ନିର୍ଦ୍ଦୟା ହୋଇକରି ।
ପାଷାଣୁ କଠିନ ତାଙ୍କ କାୟେ । ୮ ।

ଝୁଲିଥିଲା ମନ ତାଙ୍କ ତହିଁ ।
ଝିମଣ୍ଟେ ଅନ୍ତର ନାହିଁ ସହି ।
ଝୀନବସନା ଅମ୍ଭେ, ଏଡ଼େ ଦାରୁଣ,
ରହିଲେ ନିର୍ମୋହୀ କରିଯାଇଁ । ୯ ।

ଞରନ୍ତରେ ପ୍ରୀତି ମନେ ଥାଇ ।
ଞିମିଷେ ଞୟନେ ଞିଦ୍ରା ଞାହିଁ
ନ ପଡ଼ିଲୁଁ ମନେ ମାୟାମୂଳଅରି ।
ଞିର୍ମାଲୀ କରି ବହିଲେ ଯାଇଁ । ୧୦ ।

ଟେକଣ୍ଠନାଳଅ ଚକ୍ରପାଣି ।
ଟେମାଲେ କେ ତାକୁ ପାରେ ଜଣି ?
ଟାକଥାଉ ତାଙ୍କ ଗୋଧନ-ବାହୁଡ଼ା
ଟେଉଣ୍ଠ ଅସିବା ବେଳ ଜାଣି । ୧୧ ।

ଠିକେ ସେନେତ୍ର ଲଗାଇଥିଲେ ।
ଠକପଣ ପ୍ରଭୁ କଁପା କଲେ
ଠିକେଣ ଭ୍ରମରବର ରୂପ୍ କଦେ ।
ନଳ ଠାବ ଦେଖି ଭଣ୍ଡିଗଲେ । ୧୨ ।

ଡଙ୍କ ଲଗିଲା ପ୍ରାଟ୍ୟକ ଦୋଉ
ଡମ୍ବୁଡମ୍ବୁ ଅଙ୍ଗେ ପ୍ରାଣସହି !
ଡକା କଲ୍ଗ ତାଙ୍କ ପରୁବ ପୀରତି ।
ଡା ବନ୍ ନ ଜାଣୁ ଆନ କେହି ।

ଢମିଅ ପୁରୁଷ ରୂପ ଦେଖି ।
ଢାଳ ନୋହେ ଅଖି ରହେ ଲାଖି ।
ଢମପଣ ଛାଡ଼ ତନ୍ ଜର ଜର ।
କେ ପାରିବ ପେଣ୍ଡେ ପ୍ରାଣ ରଖି ? ।୧୪।

ଅଣଦେଲା କରି ଗଲେ ହରି ।
ଅଁଶ କରିଥିଲୁ ବଡ଼ କରି ।

ଅଦୋଷେ ଦଣ୍ଡିଣ କ୍ଷପାଇଁ କଇଲେ
କଉଁ ଦୋଷ ପ୍ରଭୁ ମନେ ଧର । ୧୫ ।

ତ୍ରିଭଙ୍ଗିମା ରୂପ ଦେଖି ତାର ।
ତରଳ ହେବ ହେଲେ ପଥର
ତସ୍ୱା ଛୁର ବିନା କେତେକ ମାତର
ତରଳ ନୋହିବ କଉଁ ନର । ୧୬ ।

ଥିବ ନାହିଁ ଆଉ ତନ ପୁଷ୍ଟି
ଥୋଇଥିଲା ବିହି ଯତ୍ନକରି
ଥୋଇଲା ଧନ କେ ଫେଇ ନେଇଗଲା
ଅନାସ୍ତ କଉଣ ଏତେ ନାସ୍ତି । ୧୭ ।

ଦୁଖୀ ଲୋକଙ୍କର ବନ୍ଧୁ ହୋଇ
ଦୁଖ ବଢ଼ିବା ଶହ ତ ନୋହି
ଦେଖୁ ଦେଖୁ ଏବେ ଯାଉଛି ପରାଣ
ଦୟା ନ ବହିଲ କାହିଁ ପାଇଁ । ୧୮ ।

ଧନ ଜନ ପଞ୍ଚ ସୁତ ଏଡ଼ି
ଧରିଥିଲୁ କୋଳେ ହର ଘଡ଼ି
ଧଇର୍ଯ୍ୟ ପଣ ସଙ୍ଗତେ ଘେନଗଲେ
ପିଣ୍ଡୁ ଯାଉଅଛି ପ୍ରାଣ ଛଡ଼ି । ୧୯ ।

ନବରେ ତହିଁ ନାଗସ୍ୱ ନାସ୍ତି
ନୂଆଭାବ ଦେଇ ବଶକରି
ନାନା ରସରେ ରସାଇଲେ ତାହାଙ୍କୁ
ପାସୋରିଲେ ରହି ମଧୁପୁରୀ । ୨୦ ।

ପୁରୁଷ ରତନ ଶିଖରଙ୍କ
ପୁରରେ ରହି ନାଗରୀ ସଙ୍ଗ
ପୂରୁବ ପୀରତି ଛେଡ଼ି ଏବେ ମଜି
ରହିଲେ କରି ପୀରତି ସଙ୍ଗ । ୨୧ ।

ଯାର ସୁଖ ପାଇଁ ତାଙ୍କୁ ମଜି
ଫୁରୁଣା ହୋଇଣ ଥିଲୁଁ ଭଜି
ଫାନ୍ଦ କରି ତାଙ୍କ ସେନେହ ଦଉଡ଼ି
ଗଳାରେ ଲଗାଇ ଗଲେ ଛନ୍ଦି । ୨୨

ବହୁତ ପାତକୀ ଏତେ ନାରୀ
ବହୁ ଦଣ୍ଡ ଅଛି ଏଣୁ କରି
ବନମାଳୀ ପ୍ରୀତି ଛାଡ଼ି କିପାଁ ପ୍ରାଣ
ନ ଯାଇ ରହିଛି ଯମପୁରୀ ? । ୨୩ ।

ଭାବର ବନ୍ଧୁ ବୋଲନ୍ତି ହରି,
ଭାବିଲାକୁ କାହିଁ ଏତେ ସରି ?
ଚିନ୍ତି କରି ଭ୍ରମରବର କହେ
ଭାବିଲେ ଏ ଦୁଃଖ ହେବ ପାର । ୨୪ ।

ମନ-ମୋହନଅ ପ୍ରଭୁ ଭଲ
ମାଡି ଦୁଷ୍ଟ ସନ୍ଥ ପାଳୁଥିଲା
ମନେ ନ ପଡ଼ିଲି ମାପତୁଳଅର
ଅନାସ୍ତ କରିଣ ଛାଡ଼ିଗଲା । ୨୫ ।

ଯାର ଲାଗି ଅମ୍ଭେ ଏତେ ପର
ଜାଣିଥିଲୁଁ ଅମ୍ଭେ ବଡ଼କର

ଜଗତ ଯାକ ଜାଣନ୍ତି ଜଗବନ୍ଧୁ
ଲାଗି ପ୍ରାଣ ଦେଲେ ବ୍ରଜନାରୀ । ୨୬ ।

ଚହିଅରସ କି ମନ୍ଦ ପିବ
ଚହୁ ଯେତେ ଦିନ ପ୍ରାଣ ଥିବ
ଚହୁ ନ ଥାନ୍ତା ଜୀବନ ଅଙ୍ଗ ଯାଏଁ
ଉଠାଇ ରଖିଛୁ ତାଙ୍କ ଭାବ । ୨୭ ।

ଲାବନ୍ୟନିଧି ଛାମୁକୁ ଲେଖ
ଲହୁ ଦେବା ଅମ୍ଭେ ଯେତେ ଦୁଃଖ
ଲେଖ ଲେଉଁଟା କରିଶ ବାଣୀ ଶୁଣି
ସୁମରି ଦେଖିବ ପଦ୍ମମୁଖ । ୨୮ ।

ବାହୁନ୍ଦି ହୋଇଣ ଏତେ ନାରୀ
ବିଷାଦ ମନେ ବଚନ ଫୁରି
ବିଳମ୍ବ ନ କର ଚଳ ମଧୁପୁରୀ
କୃଷ୍ଣଙ୍କୁ ଆଣିମ ହସ୍ତଧରି । ୨୯ ।

ଶ୍ରୀବନ୍ତ ସୁନ୍ଦରୀ କହେ ରାଧା
ସହୁ ନ ପାରଇ କାମ ବାଧା
ସଖିର କର ଦୃଢକା କହୁଅଛୁ
ଶ୍ରୀକୃଷ୍ଣ ପ୍ରାଣ ଅଟନ୍ତି ରାଧା । ୩୦ ।

ଶ୍ୟାମସୁନ୍ଦରଙ୍କୁ ଯେତେବେଳେ
ସମସ୍ତେ ହୋଇ ଆଣିବା ବଳେ
ମଥୁରା ନଗର ନାରୀ ରହିଥିବେ
କଥା ରହିଥିବ କାଳେ କାଳେ ।୩୧।

ଶରଦଚନ୍ଦ୍ରବଦନୀ ସକ୍ଷି
ଷଶୀ-ମୁଖୀ ଦୂତୀ ଆଗେ କହି
ଶ୍ରୀକୃଷ୍ଣ ଏବେ ଦହି ଦୁଧ ଲବଣୀ
ଘରେ ଘରେ ପଶି ଚୋରି ଖାଇ ।୩୨।

ହରିନାମ ପଦ ହୃଦେ ଧର
ହରିଙ୍କି ପାଇଲେ ହନୁମାର
ହଂସ ଚଢ଼ାଇ ଶୂନ୍ୟରେ ଯାଉଅଛି
ପଙ୍କରେ ଯେସନ ପଦ୍ମଫୁଲ ।୩୩।

କ୍ଷନ୍ତ ଶିରୋମଣି ପ୍ରଭୁ ମୋର !
କ୍ଷେପ୍ରେ ଯାଉ ପାପ ଦୁସ୍ତର ।
କ୍ଷୀଡ଼ ଦେଲେ ସିନା କ୍ଷୀର୍‌ରେ କହିବ
ବୋଲଇ ଭ୍ରମର ଯୋଡ଼ିକର । ୩୪ ।



# କାଦମ୍ବିନୀ ଚଉତିଶା

ଏହି ମନୋହର ଚଉତିଶାର *ଭଣିତା ପଦର ଶେଷପାଦ ନାହିଁ । ତେଣୁ ଅନ୍ୟ ତାଳପତ୍ର ପୋଥି ପାଇବା ପର୍ଯ୍ୟନ୍ତ ଏତେ ସିଦ୍ଧହସ୍ତ କବି କିଏ ଜାଣିବା ନିମନ୍ତେ ଅପେକ୍ଷା କରିବାକୁ ହେବ । କୃଷ୍ଣଭକ୍ତ ଯାଦୁକରବତ୍ କବି ଭାଷା ଭାବ ଓ ଛନ୍ଦର ସମନ୍ୱୟରେ ଏତେ ଚମତ୍କାର ଇନ୍ଦ୍ରଜାଲ ସୃଷ୍ଟି କରିଅଛନ୍ତି, ଯାହାର ମନ ଉପରେ ପ୍ରଭାବ, ବର୍ଣ୍ଣନା କରିବାର ବିଷୟ ନୁହେଁ, ଅନୁଭବର ବିଷୟ । ଓଡ଼ିଆ ସାହିତ୍ୟରେ କାଦମ୍ବିନୀ ଚଉତିଶା ତୁଲ୍ୟ ପ୍ରାଣବନ୍ତ ପ୍ରେମ କବିତାର ସଂଖ୍ୟା କଦାପି ଅଧିକ ନୁହେଁ ।

କୃଷ୍ଣ କଂସପୁରେ ରହି
କହନ୍ତି କାଳିକା-ଉଦୟେ ଚାହିଁ
ରେ କାଦମ୍ବିନି !
କି କରୁଥିବ ମୋ ସଖି ?
ରେ କାଦମ୍ବିନି !। ୧ ।

ଖୀଣୋଦରୀ ମୋହ ଧନୁ
ଖୀଣ କରୁଥିବ ଅମୂଲ୍ୟ ତନୁ
ରେ କାଦମ୍ବିନି !
ଖୀଣି ଯାଉ ଦିନୁ ଦିନୁ
ରେ କାଦମ୍ବିନି !। ୨ ।

ଗଗନେ ତୋ ଶୋଭା ଚାହିଁ
ଭୋଳାରେ ମୋହର ଗଲା ମିଳାଇ
ରେ କାଦମ୍ବିନି !

କନ୍ଦଳ କେତେ ଗେଲ୍ଲାଉ
ରେ କାଦମ୍ବିନି ! । ୩ ।

ଘନ ପୀନ ପୟୋଧରୀ
ଘଡ଼ି ଘଡ଼ିକେ ତା ଭାବ ସ୍ମର
ରେ କାଦମ୍ବିନି !
ହୃଦୟ ମୋଏ ବିଦାର
ରେ କାଦମ୍ବିନି ! । ୪ ।

ନବୀନ ରଙ୍ଗ ରସରେ
ନାହିଁ ନାହିଁ ନାହିଁ ନାହିଁ ଯା କରେ
ରେ କାଦମ୍ବିନି !
ନାହିଁ ନାହିଁ ଉନପୁରେ
ରେ କାଦମ୍ବିନି ! । ୫ ।

ଚଢ଼ାଇବ କହିଁ ସୁଖ
ତୁମ୍ଭୁଥିଲେ ତୁମ୍ଭୁଥାଇ ମୋ ମୁଖ
ରେ କାଦମ୍ବିନି !
ତାଙ୍କୁ ଦେଲ ଏତେ ଦୁଃଖ
ରେ କାଦମ୍ବିନି ! । ୬ ।

ଛଇଳାମଣି ନାଗରେ
ସ୍ଥିତ ଦ୍ୱାଦଶରେ ପନ୍ଦ୍ରଢ଼େ ରସେ
ରେ କାଦମ୍ବିନି !
ବିପକ୍ଷିତ ରଙ୍ଗ ଶେଷେ
ରେ କାଦମ୍ବିନି ! । ୭ ।

ଜଳଦ ଘୋର ଗର୍ଜନ
ଝାଣ୍ମଣି ଶୁଣି ହୁଏ ଉଚ୍ଛନ
ରେ କାଦମ୍ବିନି !
ମୋ ସଙ୍ଗେ ହୋଅଇ ଲୀନ
ରେ କାଦମ୍ବିନି !! ୮ ।

ଝସ କେତନ ସମରେ
ଝଲି-ଗୋଷ୍ଠୀ ବଳା ଝମକିବାରେ
ରେ କାଦମ୍ବିନି !
କାମକୁ କାତର କରେ
ରେ କାଦମ୍ବିନି !! ୯ ।

ନତନ୍ ଭସ୍ମ ଛଡ଼ାଇ
ନଗିନା କଳାମେଘୀ-ଶାଢ଼ୀ-ମାଇ
ରେ କାଦମ୍ବିନି !
ସତେ ମୁଁ ଥରେ ଫେଡ଼ିବି ?
ରେ କାଦମ୍ବିନି !! ୧୦ ।

ଠେକସ୍ତନା ରଚି ସଜ
ଟିକାଏ ମନରୁ ନ ଗଲା ଅଜ
ରେ କାଦମ୍ବିନି !
ସେ ସୁଖ ଜାଣେ ମନୋଜ
ରେ କାଦମ୍ବିନି !! ୧୧ ।

ଠୁଳ ଗିରୁ ଚନ୍ଦ୍ରମୁଖୀଁ
ଠାଉ ମଝେ ଯାହା ଅଛି ସେ କହ

ରେ କାଦମ୍ବିନି !
ସେ ସୁଖ ସଂସାରେ କାହିଁ
ରେ କାଦମ୍ବିନି !! ୧୨ ।
ଡାହୁକ ଡାକ ଡମ୍ବରେ
ଡମ୍ବରୁ-ମଧ୍ୟା କାମ ଅଙ୍ଗ ଓଷ୍ଠା ରେ
ରେ କାଦମ୍ବିନି !
ଢ ସୁଖ ଜାତ ନ କରେ
ରେ କାଦମ୍ବିନି !! ୧୩ ।
ତମ୍ମ ପଣ ମୁହିଁ କଲି
ଥାଲେହେଁ ଧନକୁ ଗୁଡ଼ି ଅଛଲି
ରେ କାଦମ୍ବିନି !
ଅଦ୍ୱା ଏଦ୍ୱା ସେ ଅର୍କିଲି
ରେ କାଦମ୍ବିନି !! ୧୪ ।
ଅନଙ୍ଗ ଶର ବଶରେ
ଆକ୍ରନ୍ଦ ସୁଖୀ ଚଳ ଅପସରେ
ରେ କାଦମ୍ବିନି !
ପଡ଼ିଥିବ ଅବଶରେ
ରେ କାଦମ୍ବିନି !! ୧୫ ।
ତରୁଣୀମଣି ସୁରତି
ତାରତମ କଲେ ଇନ୍ଦ୍ର ସମ୍ପତ୍ତି
ରେ କାଦମ୍ବିନି !
ହେବ ଜଳାଞ୍ଜଳି ରତି
ରେ କାଦମ୍ବିନି !! ୧୬ ।

ଥରେହେଁ ନୋହେ ମୁଞ୍ଚୁଛି
ଥାଉ ଯା ଥାଉ ଯା ବୋଲି ବୋଲୁଛି
ରେ କାଦମ୍ବିନି !
ନୀବି ଫେଡ଼ନ୍ତେ ମୃଗାକ୍ଷୀ
ରେ କାଦମ୍ବିନି ! । ୧୭ ।

ଦାରୁଣ ଫୁଲ କୋଦଣ୍ଡ
ଦୂର କର ଦସ୍ୟୁ ଦଣ୍ଡକୁ ଦଣ୍ଡ
ରେ କାଦମ୍ବିନି !
ଦଣ୍ଡୁଥିବ ତାର ପିଣ୍ଡ
ରେ କାଦମ୍ବିନି ! । ୧୮ ।

ଧନକୁ ଯାମିନୀ ଶେଷେ
ଧଇଲେ ଧୀରେ ମୁଁ ସୁରତ ଅଶେଷେ
ରେ କାଦମ୍ବିନି !
ନାହିଁ ନାହିଁ କରି ହସେ
ରେ କାଦମ୍ବିନି ! । ୧୯ ।

ନିର୍ମଳ ଚନ୍ଦ୍ର କିରଣେ
କାମିନୀ ଯେନ ରତ୍ନ ପ୍ରାଙ୍ଗଣେ
ରେ କାଦମ୍ବିନି !
ମାଡ଼ଇ ମଦନ ରଣେ
ରେ କାଦମ୍ବିନି ! । ୨୦ ।

ପୃଥୁଲ ନିତମ୍ବବତୀ
ପୀନ ପୟୋଧରୀ ଶାନ୍ତା ଅଗ୍ରତ

ରେ କାଦମ୍ବିନ !
ମଣୁଥିବ କତ ପ୍ରତ
ରେ କାଦମ୍ବିନ ! । ୨୧ ।

ଫାଇ ଘନାଘନ ଗୃହ୍ନିଁ
ଫୁରୁଣାରେ ଗଣ୍ଡେ ରୋମ ଫୁଲାଇ
ରେ କାଦମ୍ବିନ !
ଆସେ ରଣସଜ ହୋଇ
ରେ କାଦମ୍ବିନ ! । ୨୪ ।

ବିପୁଳ କୁଚରେ ତାର
ବସାଇଲେ ତୀକ୍ଷ କରଜଗାର
ରେ କାଦମ୍ବିନ !
ମଦନେ ହୋଏ କାତର
ରେ କାଦମ୍ବିନ ! । ୨୩ ।

ଭାବବତୀ ସୁଖରାଶି
ଭାଳୁଥିବ ଗଣ୍ଡେ କର ନିବେଶି
ରେ କାଦମ୍ବିନ !
ମୋହ ଘୁଣି ଅହ୍ନାଶି
ରେ କାଦମ୍ବିନ ! । ୨୪ ।

ମେଘେ ବିଜୁଳି ଝଟକ
ମଦାଳସୀ ଗୃହ୍ନିଁ ଲଭିବ ଦକ
ରେ କାଦମ୍ବିନ !
ହରାଉଥିବ ବିବେକ
ରେ କାଦମ୍ବିନ ! । ୨୫ ।

ଯୋଁକ୍ଷି ବନ୍ଧୁଥିବ କାମ
ଜପୁ ଜପୁ ଗୋଷ୍ଠ ଯୋଗୀନ୍ଦ୍ର ନାମ
ରେ କାଦମ୍ବିନି !
ଯାଉଥିବ ବସି ଧ୍ୟାମ
ରେ କାଦମ୍ବିନି !। ୧୬ ।

ରଖିବ ଷ୍ଟ କଲ ଜୀବ
ରମଣୀରତନ ଭାବ ମୋ ଭାବ ?
ରେ କାଦମ୍ବିନି !
ଢ କଲ୍ପ ଅନ୍ଧା ଦଇବ !
ରେ କାଦମ୍ବିନି !। ୧୭ ।

ଲେଶେ ମୁଁ ହେଲେ ଅନ୍ତର
ଲେଖଇ ପଟେ ସ୍ୱରୂପ ମୋହର
ରେ କାଦମ୍ବିନି !
ଏବେ ହେଲା ଏତେ ଦୂର
ରେ କାଦମ୍ବିନି !। ୧୮ ।

ବିକଚ ଫୁଲ କଦମ୍ବ
ବିଲୋକନ କର ଉସକଦମ୍ବ
ରେ କାଦମ୍ବିନି !
ନ କରିବ ଦୟାଲମ୍ବ
ରେ କାଦମ୍ବିନି !। ୧୯ ।

ଶୁଣି ଏ ମୟୂର ରଡ଼ି
ସ୍ତନସ୍ୱ ଯାଉଥାଇ ଅଙ୍ଗେ ଜଡ଼ି

ରେ କାଦମ୍ବିନୀ !

ଏବେ ଯିବ ଛାଡ଼ି ନାଡ଼ି

ରେ କାଦମ୍ବିନି ! । ୩୦ ।

ସୁବେଶ ହୋଇ ସୁକେଶୀ

ସଙ୍କେତ ଥାନେ ଯେ ମିଳଇ ଆସି

ରେ କାଦମ୍ବିନି !

ମନ୍ଦ ମନ୍ଦ ହୋଇ ହସି

ରେ କାଦମ୍ବିନି ! । ୩୧ ।

ଶୁଅଇ ନାହିଁ ପାଲଙ୍କ

ଶାଳୁକରେ ଭଡ଼ଥାଇ ବିମ୍ବୋଷ୍ଠୀ

ରେ କାଦମ୍ବିନି !

ଚନ୍ଦ୍ର ଯା ହୃଦୟ ଫାଙ୍କ

ରେ କାଦମ୍ବିନି ! । ୩୨ ।

ହର-ବଇର ଶରରେ

ହଜିଇ ସେବେ ଚେତନା କାତରେ

ରେ କାଦମ୍ବିନି !

ପଡ଼ିଥିବ ଅବନୀରେ

ରେ କାଦମ୍ବିନି ! । ୩୩ ।

ଷୀର ସିନ୍ଧୁ ସୁତା ପଛ

ଛଛନ୍ଦରେ ନଣି ଦବସ ଚନ୍ଦ୍ର

ରେ କାଦମ୍ବିନି !

* * * * *

# ଉଦ୍ଧବ ଚଉତିଶା

---

କମନୀୟ ଦୃଷ୍ଟାନ୍ତମାଳା ଯୋଜନପଟୁତା ଓ ମଧୁର ସ୍ୱାଭାବିକତା କାନ୍ତ କବି ଭୂପତିଙ୍କର ବିଶିଷ୍ଟତା । ଉଦ୍ଧବ ଚଉତିଶାରେ ଅମ୍ଭେମାନେ ଏହି ଦୁଇ ଗୁଣର ଉତ୍କର୍ଷହିଁ ଦେଖୁଁ । ଭୂପତିଙ୍କ ଦୃଷ୍ଟାନ୍ତ ଚଉତିଶା ଯଥା ସ୍ଥାନରେ ପ୍ରକାଶିତ ହେବ । ତହିଁରେ ତାଙ୍କ ପ୍ରତିଭାର ସମସ୍ତ ବୈଶିଷ୍ଟ୍ୟ ପ୍ରକଟିତ ହୋଇଅଛି । ଶ୍ରୀକୃଷ୍ଣ ଦାସ ଓ କୃଷ୍ଣଦାସଙ୍କ ଉଦ୍ଧବ ଚଉତିଶା ସଙ୍ଗରେ ଭୂପତିଙ୍କ ଉଦ୍ଧବ ଚଉତିଶା ତୁଳନା କଲେ ତିନୋଟି ବଡ଼ କବିଙ୍କ ମଧ୍ୟରୁ କିଏ କେଉଁ ଦିଗରେ ବ୍ୟକ୍ତିତ୍ୱର ବୈଶିଷ୍ଟ୍ୟ ବଜାୟ ରଖି ଏକ କଥା ଭିନ୍ନ ଭିନ୍ନ ଭାବରେ ବର୍ଣ୍ଣନା କରିଅଛନ୍ତି ବୁଝାଯିବ ।

କୃଷ୍ଣଗୁଣ ଶୁଣି ବରଜତରୁଣୀ ଉଦ୍ଧବେ କହନ୍ତି ଏକ
କଳା ଲୋକଙ୍କର ସଙ୍ଗତେ ପୀରତି କଲେ ଲୋକେ ଅବିବେକ
ଉଦ୍ଧବ ହେ !
କସ୍ତୁରୀ, ଭୃଙ୍ଗ, କୋକିଳ
କୃଷ୍ଣ, କେଶ, ଫଣୀ, ରାହୁ, ଯମ, ଶନି କାଳିଆ କେଉଁଟା ଭଲ ?
ଖଣ୍ଡ, ଶାକର, ଦୁଧ, ସର ଖୁଆଇ ଖେଳାଉଡ଼ା ବଡ଼ କଲୁଁ
ଖଣ୍ଡତଯୁଁ ଅମ୍ଭେ କୃଷ୍ଣଫଳ ଲଭି ରମ୍ଭା ତରୁ ପ୍ରାଏ ହେଲୁଁ
ଉଦ୍ଧବ ହେ !
ଖୀଣ ହେଲୁ ବଡ଼ କାୟେ
ଖଣ୍ଡପରଚେ ପରମାନନ୍ଦ ପ୍ରୀତି ପ୍ରାଣ ରଖିବା ସଂଶୟେ । ୧ ।
ଗରୁଡ଼ଉଦ୍ଭବମା ଗରବେ ଅମ୍ଭେ ଯେ ମତ୍ତସିଂହ ପ୍ରାୟେ ହେଲୁଁ
ଗୋରକୂପ ଗୋବିନ୍ଦ ପ୍ରଉବନ୍ଧ ପ୍ରେମରେ ବୁଡ଼ି ପଡ଼ିଲୁଁ

ଉଦ୍ଧବ ହେ !
ଗତ ମଧୁମାସ ପ୍ରାୟେ
ତିରି ଗହନ ବନ ଲତା ଖୋଜିଣ ନ ଭେଟନ୍ତି ମୋହନ ରୂପେ ॥
ଘନନୀଳ ବନ୍ଧୁ ଗୃତକର ଯେହ୍ନେ ଅନ୍ୟ ନୀର ନୋହେ ପାନ
ଘନ-ଶ୍ୟାମ ବନ୍ଧୁ ଘରେ କି ବାହାରେ ନୟନେ ନ ଦେଖୁ ଆନ
ଉଦ୍ଧବ ହେ !
ଘୋଟିଅଛି ଚଉପାଶେ
ଦର୍ପଣ ମୁକୁରେ ପ୍ରତିବିମ୍ବ ଯେହ୍ନେ ଅଲିଙ୍ଗନକୁ ନ ଆସେ । ୪ ।
ଅଧିରୁ ଅମ୍ବର ପ୍ରତିରଶ୍ମି ପ୍ରାୟେ ଶ୍ରୀକୃଷ୍ଣ ଅନ୍ତର ହେଲେ
ଅକ୍ଷର ମାତ୍ରା ଅନୁସ୍ୱାର ସହିତେ ପ୍ରେମ ପୁସ୍ତକ ହୋଇଲେ
ଉଦ୍ଧବ ହେ !
ଅନୁଭବ କରୁଁ କରୁଁ
ଆମ୍ଭେ କି କୃଷ୍ଣ କୃଷ୍ଣ ଆମ୍ଭ ଶରୀର ଦ୍ୱୈତ ଭାବ ପାଶୋରୁଁ । ୫ ।
ଚନ୍ଦ୍ରେ କଳଙ୍କ ପରାୟେ ଜାଗିଅଛି ଜାଗ୍ରତ ନିଦ୍ରା ସ୍ୱପନେ
ଚେତିଲୁ ସମ୍ପଦ ଭୋଗକୁ ନ ଆସେ ଚିତ୍ର ଫଳ ପୁଷ୍ପ ଯେହ୍ନେ
ଉଦ୍ଧବ ହେ !
ଗୃହ୍ନରେ ଘୀର ଭ୍ରମର
ଗୃହ ଚନ୍ଦ୍ରେ ବୋଧ କରି ନ ପାରଇ ଚକୋର ପ୍ରାୟେ ଭ୍ରମର । ୬ ।
ଛନ୍ଦ ଭୁଜ ଭୁଜେ ପ୍ରେମ ଆଲିଙ୍ଗନ ଚୁମ୍ବନ ପାନ ଅଧରୁ
ଛଟନେ କନ୍ଦର୍ପ କୁବେର ଭଣ୍ଡାର ରତ୍ନରହି ଜୁଲକରୁ
ଉଦ୍ଧବ ହେ !
କ୍ଷଣେ ହେଲେ ଦେଖା ଦେଖି
କ୍ଷୀର ପ୍ରାୟେ କରି ବ୍ରହ୍ମା ରୁଦ୍ର ଇନ୍ଦ୍ରପଦ ସମ୍ପଦକୁ ଲେଖି ॥

ଯୋଗ ସାଧ ବୋଲି ବୋଲ ହେ ଉଦ୍ଧବ ! ଯଦୁନାଥ ଅଜ୍ଞାଦେଲେ
ଜାଣିଲୁ କୁବୁଜା ଯୋଗେଶ୍ୱରୀ ତାଙ୍କୁ ଯୋଗମାର୍ଗ ଶିଖାଇଲେ
ଉଦ୍ଧବ ହେ !
ଯଦୁନାଥ ବଡ଼ ଯତି
ଯୋଗ ଶିଖିଲୁଁ ଏକାଧରେ ତା ତହୁଁ ଷୋଳ ସହସ୍ର ଯୁବତୀ । ୮ ।

ଝଟକଣ୍ଣ ମନ ତାଙ୍କ ମଧୁ ନଗରେ ନାଗରୀମାନଙ୍କ ଭୁଲେ
ଝାଡ଼ି ଟିକ ଯେସନେ କାକକୁଳେ ବଟି ମିଳଇ ତା ନିଜ ଘରେ
ଉଦ୍ଧବ ହେ !
ଝୁରୁଅଛୁଁ ତହିଁ ପାଇଁ
ଝଳ କି ଶୋଭା ଶରଦ ପୂର୍ଣ୍ଣଚନ୍ଦ୍ର କାହିଁ ରଖିଛ ଲୁଚାଇ । ୯ ।

ନିର୍ମଳ ପ୍ରେମ ପ୍ରଶଂସିବା ଉଦ୍ଧବ ଦଶରଥ ରାଜାଙ୍କର
ନୟନୁଁ ଅନ୍ତର ହେବା ମାତ୍ରେ ରାମ ପ୍ରାଣ ଛାଡିଲା ଶରୀର
ଉଦ୍ଧବ ହେ !
ଞାଲକୁ ଜାଇଛୁଁ ଅମ୍ଭେ
ନନ୍ଦସୁତ ଶୁଦ୍ଧ ନିରାକାର ଭଜ ଶୁଣିଲୁଁ କହୁଛ ତୁମ୍ଭେ । ୧୦ ।

ଟାଣି ଚେଲାଞ୍ଚଳେ ଉରଜ ଅଞ୍ଚଳେ ଅଣି କୃଷ୍ଣଙ୍କୁ ବସାଉଁ
ଟେକ ଟେକ ବିମ୍ବ ଅଧରେ ଅଧର ମିଶାଇ ଚୁମ୍ବନ ଦେଉଁ
ଉଦ୍ଧବ ହେ !
ଟେକିଧର ନୋହୁ ଅମ୍ଭେ
ଠେକି ହୃଦପ୍ରକମଳ ଷଡ଼ଚକ୍ର ଭେଦ କହୁଅଛ ତୁମ୍ଭେ । ୧୧ ।

ଠାବ ନ କଲ ଏତେବେଳେ ହେ ଉଦ୍ଧବ ! ସଖାଭାବେ ସଙ୍ଗେ ଥାଇ
ଠିକେ ଭଗତର ଭାବ ଗୋଇଠା ସେ ହୃଦ ପଦ୍ମେ ଛନ୍ତି ବହି

ଉଦ୍ଧବ ହେ !
ଠୁଳ ବ୍ରହ୍ମ ହେବେ ଜାଣି
ଠାଠିକ ଭକତ ପାଦ ପଦ୍ମ ଚିହ୍ନ ହୃଦପ୍ରଦେଶରେ ଅଣି । ୧୨ ।

ଡାକ କହୁଅଛୁଁ ଜଗତେ ବଦତ ଲୁଚା ଗୋପ୍ୟ କଥା ନୋହି
ଡୋଳେ ଦେଖିଅଛୁଁ ବ୍ରହ୍ମାଦି ଇନ୍ଦ୍ରାଦି ଗୋପୁଁ ଗଲେ ଜ୍ଞାନ ପାଇ
ଉଦ୍ଧବ ହେ !
ଡାକ ମୁରଲୀରେ ହରି
ଢାଳି ଅମୃତ କହି ଧର୍ମ କଥା ନ ପାରଲେ ଆନ କରି । ୧୩ ।

ଢାଳ ରବି ଶଶୀ ମଣ୍ଡଳ ମଧ୍ୟରେ କୃତାଶନେ ହେମାସନ
ଢାଙ୍କି ମନ ଚକ୍ଷୁ ପବନ ନିରୋଧି କହିଲେ ଯେ କୃଷ୍ଣ ଧ୍ୟାନ
ଉଦ୍ଧବ ହେ !
ତମ ନୋହେ କଥା ସେହି
ତଲ ହଳ କଳା ଫଣୀ ଯା ନିକଟେ ସେବ ପାରେ ଅନ୍ୟ କେହି ॥

ଅନେକ ତପ ଜପ ତୀର୍ଥ ବ୍ରତରେ ନ ପାରନ୍ତି ମୁନି ଧରି
ଅନୁମାନ ଅନୁଭବହିଁ କଳ୍ପନ ଅନୁରାଗବଶ ହରି
ଉଦ୍ଧବ ହେ !
ଅତି ପ୍ରେମ ହେମ ରଙ୍କ
ଆଶା ପୂର୍ଣ୍ଣ କଲେ ଗାଇ ଗୋପୀଙ୍କର ହୋଇ ସେ ବଣ୍ଠ ବାଳକ ॥

ଢାଙ୍କ ଭୁଲେ ଅମ୍ଭେ ମାନବତୀ ହେଲେ ଗୁଞ୍ଜା ଫଳ ପ୍ରାୟେ ଦଶୁଁ ॥
ଢନୁଯାକ ହବ୍ୟ ଅନୁରାଗ ପୂରି ମୁଖରେ ତମ ପ୍ରକାଶୁଁ
ଉଦ୍ଧବ ହେ !
ଭୁକ୍ତ ଦେଉଥାଉଁ ଗାଳି
ଢରଣ ଧରି ଚରଣ ତଳେ ପଡ଼ି ଗୁଡ଼ି କହେ ବନମାଳୀ । ୧୬ ।

ଥୋକାଏ ଲାଜ ପେଡ଼ି ଏଣୁ କହିଲୁଁ ତୁ ଯେଣୁ ତାଙ୍କ ବିଶ୍ୱାସ
ଥିଲୁ କୁଞ୍ଜରେ ଅଲୌକିକ ରସରେ ହୁଇଥିଲୁ ଦିଗବାସ
ଉଦ୍ଧବ ହେ !
ଥୋଇଲେ ଅନେକ ଚିହ୍ନ
ଥଯ୍ୟେ ନ ପାଉଁ ମଦନ ଜଳଧିରେ ପଡ଼ିଲେ ତହିଁ ନୟନ । ୧୭ ।

ଦେହ ଦେଖିବା ପାଇଁ ବସ୍ତ୍ରହରଣ ବିଚାରି କଲେ ମାଧୋଇ
ଦଇନ କଲୁଁ, ବୋଲେ ଆସ କୂଳକୁ ଦୁଇ କର ଶିରେ ଦେଇ
ଉଦ୍ଧବ ହେ !
ଦିଗମ୍ବର ପ୍ରାୟେ ହେଲୁଁ
ଦେଖିଲୁଁ ଲାଜ ମରଣହୁଁ ବଳଲା ମୁଦ୍ରିତ ଲୋଚନେ ଗଲୁଁ । ୧୮ ।

ଧୂରୁଁ ଦେଖି ବୋଲେ ମିଶିଛୁ ବସନ ଚିହ୍ନି ନିଅ ଯେ ଯାହାର
ଧରଣୀ ଦ୍ୱିଭାଗ ହେବ ପଶିଯିବୁଁ ଏମନ୍ତ ହେଲା ଶରୀର
ଉଦ୍ଧବ ହେ !
ଯାଇଁ ସମସ୍ତେ ମିଳିଲୁଁ
ଧରାଧରି କରି ଚିହ୍ନିବା ବସନ ଯେ ଯାହାର ଚିହ୍ନି ନେଲୁଁ । ୧୯ ।

ନିଶ୍ଚେ ଜାଣିଲୁଁ ପୁରୁଷ ଦୃଢ଼ ବୋଲି ମରମ ବାରତା ନାହିଁ
ନିଜ ନିକର ତାଙ୍କ ଅମ୍ଭ ବିଚାର ତୁମଙ୍କୁ କହିବେ କାହିଁ
ଉଦ୍ଧବ ହେ
ନିଜ ଲୋକ ତୁମ୍ଭେ ତାର
ନନ୍ଦସୁତ ସଙ୍ଗେ ପୀରତି ଆମ୍ଭର ଦେବଙ୍କୁହିଁ ଅଗୋଚର । ୨୦ ।

ପ୍ରେମ ପରଶ ନ ପାଇଥିବା ଯାକେ କାଞ୍ଚନେ ଥାଇ ମୁହାଁସ
ପ୍ରବେଶ ଖୁଭୁଡ଼ା ନୋହିଥିବା ଯାକେ ମାତୁଳମାନେ ସର୍ବସ୍ୱ

ଉଦ୍ଧବ ହେ !
ପିତା ପୁତ୍ରେ କନ୍ୟା ଗଣ
ପଢ ସ୍ୱରତ୍ତ ନ ପାଇ ଥିବା ଯାକେ ପିଉଲି ଧୂଳରେ ମନ । ୨୧ ।

ଫଲଭ୍ରମେ ଫୁଲ ଖାଉଥିବା ଯାକେ ନାନାଦି ଜ୍ଞାନ କଥନ
ଫୁଙ୍କା ବେଦ ଶୁଭନ୍ତି ଶଙ୍ଖେପ୍ରାୟ କର୍ମଚୟ ପ୍ରେମ ଶୂନ୍ୟ
ଉଦ୍ଧବ ହେ !
ଫେଡ଼ି କହନ୍ତୁଁ କହିବ
ଫୁଲବନେ କାହ୍ନେ ଯାହାଙ୍କୁ ନେଲେ ସେ କହନ୍ତୁ ବାରେ ଅସିବ ।

ବଡ଼ କଥା କଲ ଅଇଲ ଉଦ୍ଧବ କହିଲ କୃଷ୍ଣ ସନ୍ଦେଶ
ବାରତା ପାଇଲୁଁ ତୁମ୍ଭକୁ ଦେଖିଲୁଁ ଏ ଆମ୍ଭ ଲାଭ ବିଶେଷ
ଉଦ୍ଧବ ହେ !
ବୋଲିବ ଏତେ ମାତରେ
ବିନୟ ହୋଇ ଗୋପୀ ଏ ମାଗିଛନ୍ତି ପ୍ରେମ-ପାସୋରି ମନ୍ତ୍ର । ୨୩ ।

ଭାବେ ଗଦ ଗଦ ବିହ୍ୱଳ ବଚନ ନୟନ ଜଳ ଜଳକା
ଭଗତି ଭାବରେ କଣ୍ଠ ତା କୁଣ୍ଠିତ ପୁଲକେ ରୋମ ମାଳିକା
ଉଦ୍ଧବ ଯେ
ଭାବେ ଗୋପୀ ପ୍ରଶଂସିଲେ
ଭଲ କରି ରତ୍ନମାଳା ଏ ବାଛିଣ ଉଦ୍ଧବେ ମେଲାଣି ଦେଲେ । ୨୪ ।

ମଣ୍ଡାଇ ରଥ ସଜ କରି ଉଦ୍ଧବ ନନ୍ଦ ଦୁଆରେ ମିଳିଲା
ମହାପ୍ରଭୁଙ୍କୁ ମୁଁ କି ବୋଲି ବୋଲିବ ଯଶୋଦାଙ୍କୁ ଜଣାଇଲା
ଉଦ୍ଧବ ହେ !
ପିତା ପୁତ୍ର ସ୍ନେହ ବହି
ମହାପ୍ରଭୁ ବୋଲି ବୋଲୁ ସେ ଭୁଣ୍ଡିକେ ବୟସରେ ବଡ଼ ତୁହି ॥

ଜନମ କାଳରୁ ଅନେକ ପ୍ରମାଦୁ ରଖିଲେ ତାଙ୍କୁ ଅମ୍ବିକା
ଯହିଁ ଥିଲେ ତହିଁ ଘାତ ପାଞ୍ଚ ନାହିଁ ରୁକ୍ମିଣୀ ଧନ ମୋ ଏକା

ଉଦ୍ଧବ ହେ !
ଯାଇ ତୁ ନ ପାରେ ଘରୁ

ଯଶୋଦା-ଅଙ୍ଗଣୀ ଯଶ୍ଚିର କୁଶଳ ବାରତାହିଁ ଦେଉଥିବୁ । ୧୬ ।

ରତନ ବସନ ଅଳଙ୍କାରମାନ ଉଦ୍ଧବେ ମେଲାଣି ଦେଲେ
ରଥ ପଛେ ପଛେ ସୁଦାମ ସୁବଳ ଗୋପାଳେ ପାଛୋଟି ଗଲେ

ଉଦ୍ଧବ ଯେ
ରାଜଦାଣ୍ଡରେ ରହିଲେ

ରଥୁଁ ଓହ୍ଲାଇଣ ଗ୍ଲାହାନ ଯାଇଣ ଭୂମି ଶିରେ କର ଦେଲେ । ୧୭ ।

ଲାଗିଲା ରଥ ସିଂହଦ୍ୱାରେ ଉଦ୍ଧବ କୃଷ୍ଣଙ୍କୁ ଦର୍ଶନ କଲେ
ଲମ୍ବ ହୋଇ ପଦ୍ମ ଚରଣେ ପଡ଼ିଣ ଭୂମି ଶିରେ କର ଦେଲେ

ଉଦ୍ଧବ
ଲଜ୍ଜା ପାଇ ପ୍ରଭୁ ଗଲେ ଯେ

ଲକ୍ଷ୍ମୀପତି ପୁଣ ପୁଣ ପଗ୍ରଚନ୍ତି ନୟନ ଅଶ୍ରୁ ଯଷ୍ଟରେ । ୧୮ ।

ବ୍ରଜେ ବଧୂଭାବ ସୁମରି ଉଦ୍ଧବ ଅବନ ଲୋଚନ କଲା
ବେଳକୁ ବେଳ ଝଲଝଳ ବଚନ କଣ୍ଠ ତା କୁଣ୍ଠିତ ହେଲା

ଉଦ୍ଧବ ଯେ
ବହୁଳ ଯଶାକୁ ଭଜି

ବହି ଝର ଝର ନୟନ ଲୋତକ କାହେ ଲାଜ ଭୟ ତେଜି । ୧୯ ।

ଶ୍ରୀକୃଷ୍ଣ ଶୋକସିନ୍ଧୁ ମଧ୍ୟେ ବୁଡ଼ିଲେ ଉଦ୍ଧବ ଯଶାକୁ ଦେଖି
ଯେତେକ ସୁମରି ବୋଇଲେ ବୃନ୍ଦାବନେ ବୃନ୍ଦାବତୀ ପ୍ରିୟସଖୀ

ଉଦ୍ଧବ ଯେ

ଶ୍ରୀକୃଷ୍ଣ ଧ୍ୟାନେ ଜାଣିଲେ
ସଜଳ ଲୋଚନ ସକମ୍ପ ଅଧର ଉଦ୍ଧବେ ଧରି କାନ୍ଦିଲେ । ୩୦ ।

ସଚେତ ହୋଇଣ କହଇ ଉଦ୍ଧବ ସନ୍ଦେଶ ଗୋପପୁରର
ସବୁ ଗୋପୀଏ ମାଗିଛନ୍ତି ଗୋସାଇଁ ପ୍ରେମ ପାଶୋରି ମନ୍ତ୍ରର

ମହାପ୍ରଭୁ !
ସଂବା ଭକ୍ତିଭାବ ଶୁଣି
ଏମ ନୋହନ୍ତି ସେ ବସ୍ତୁରେ ଗୋପୀକା ଗୋଟକ ଗୋଟିଏ ମୂନ ।

ଶଙ୍ଖାରି ଭଣ୍ଡାରି ରଜକ ତାମ୍ବୁଲୀ ମାଲୀ ଗୋସ୍ତୁଁ ଯୁଡ଼ାଗଲେ
ସୁବର୍ଣ୍ଣ ରତନ ବଣିଜୀ କାପେଡ଼ୀ ବାକ ବୁଣା ପଳାଇଲେ

ମହାପ୍ରଭୁ !
ସନ୍ଧ୍ୟାବେଳେ ଗୋପପୁରେ
ଦିବ ଦିବ ବାଣୀ ଉଚ୍ଚସ୍ୱରେ ଶୁଣି ସବୁ ଗୋପୀଙ୍କର ଘରେ । ୩୧ ।

ହା ହା କୃଷ୍ଣ ବୋଲି ଗଳା ଧରାଧରି କାନ୍ଦି ଏକକୁ ଅନେକ
ହଜାଇ ଜ୍ଞାନ ଶୋକସିନ୍ଧୁ ମଧ୍ୟରେ ବୁଡ଼ାଇ ତହୁଁ ବିବେକ

ମହାପ୍ରଭୁ !
ହତ୍ୟା ହେବେ ସିନା ମଲେ
ପାଷାଣୁ କଠିଣ ହୃଦୟ ତୁମ୍ଭର ବୋଲିବା ବାଟରେ ନଗଲେ । ୩୨ ।

କ୍ଷମାନାଥ କହେ ଶୁଣ ହେ ଉଦ୍ଧବ ! ନରହେ ଅଛୁଁ ଗୋପରେ
ଘଡ଼ି ନିଦ୍ରାଭାବ ସ୍ୱପନେ ଯେସନ ମନ ଖେଳେ ସର୍ବପୁରେ

ଉଦ୍ଧବ
କ୍ଷଣେ ଗୋପୀ ଲୀଳା ଶୁଣି
କ୍ଷର ପ୍ରାପ୍ତେ ମୋତେ ଦେବ ଶ୍ରଦ୍ଧ ପ୍ରତେ କବି ଭୂପତି ପ୍ରେ ଭଣି ॥

---

# ବିଷ୍ଣୁଦାସଙ୍କ ଚଉତିଶା

---

ବିଷ୍ଣୁଦାସ ଉକ୍ତ ପୂର୍ବ ଯୁଗର ଜଣେ ମହାକବି । ଲୀଳାବତୀ କାବ୍ୟର ରଚୟିତା ବାଣପୁର ରାଜା ରଘୁନାଥ ହରିଚନ୍ଦନ "ରତି ବରଗନ" ପେରି ତାଙ୍କୁ ତାଙ୍କ ସଭାରେ କବିତାଚାର୍ଯ୍ୟରୂପେ ରଖିଥିବାର ଲେଖିଅଛନ୍ତି । "ବିଷ୍ଣୁଦାସ ନାମରେ କବି । ଯେଣୁ ଗୀତେ ପଢନ୍ତି ଭୂଭବି" ଏହା ମଧ୍ୟ ଲୀଳାବତୀରେ ଲେଖାଅଛି । କିନ୍ତୁ ଦୁଇଗୋଟି ଚଉତିଶା, ସାବିତ୍ରୀ ଚରିତ କାବ୍ୟ ଓ କଳାବତୀ ନାମକ ଖଣ୍ଡେ ଅପୂର୍ଣ୍ଣ କାବ୍ୟ ଛଡ଼ା ତାଙ୍କର ଅନ୍ୟ କୌଣସି ଲେଖା ମିଳୁନାହିଁ । ସେ ଯେ ଅତି ଉଚ୍ଚ ଦରର କବି ଏହି ଚଉତିଶା ତାହାର ପ୍ରମାଣ । ପାଣିରୁ ଯେମନ ନାରଙ୍ଗରେ ସ୍ୱାଦ । ଓଡ଼ିଆ ଭାଷା ତାର । ସଂଖ୍ୟାବହୁଳ ଏହି ଚଉତିଶା ତୁଲ୍ୟ ପ୍ରାଞ୍ଜଳ କବିତାରେ ଓଡ଼ିଆ ହୃଦୟର ଅନ୍ତର୍ନିହିତ ଭାବଟିର ପ୍ରତିବିମ୍ବ ଦର୍ଶନୀୟ ।

କମଳଦଳଲୋଚନ !      କୁରଙ୍ଗ ଅଙ୍କ ବଦନ !
କରିବରଗାମୀ ଧନ ! ମୁନିମୋହନ !
କୃଶୋଦରୀ-ରୂପରାଶି !      କୁଟିଳ ଚିକ୍କଣକେଶି !
କନ୍ଦର୍ପ-କେଳି-ଲାଳସି ଟିକବଚନ !
କାମିନୀ ରେ ଗୁଡ଼ି ତୋ ମୁଖ
କାମଦେବକାଣ୍ଡ ନଟ୍ୟେ ଦେଉଛି ଦୁଖ । ୧ ।

ଖଞ୍ଜନୀନୟନୀ ସଖି !      ରସିକା ! ଅଜନ୍ମ ସୁଖୀ !
ଖଣେହେଁ ନୟନେ ତୋତେ ନୋଦେଖେ ମରୁଛି
ଖଣ୍ଡି ସେ ସୁଖ ବଧାତା      ଖଟାଇଲା ଘୋର ଚିନ୍ତା
ଖଣେ ଯେ ନ ଛାଡ଼ୁ ମୋତେ ଝୁରୁ ସୁକେଶୀ
ଖଟୁଥିବ ସନ୍ତତେ ତୋତେ
ଖଣ୍ଡେନ୍ଦୁଶେଖର ଏହା କରିବେ ମୋତେ । ୨ ।

ଗୁପତ ବନସ୍ତ ତୋର ଗୁଣନ୍ତେ ଶରୀର ମୋର
ଘାର ହୋଉଥାଇ ପ୍ରେମେ ମଧୁଚନ୍ଦ୍ରାସି !
ଗେଲେ ସୁନ୍ଦରୀ ନୟନ ବନ୍ଦୀ କରିଅଛୁ ମନ
ଶୁଣରେ ଗୁଣରତନ ଯୁବଜୀବନି
ଗରୁଡର ଯେଣେ ଦସନେଷ୍ଟ
ଗୁପତ କ୍ରୀଡ଼ାରେ କର ଜାଣିଛୁ ଦେଶ । ୩ ।

ଘନସ୍ତନୀ ଘନ ନୀଆ— ସମସ୍ତେ ଚନ୍ଦ୍ରଲେ ହେତାଠେ
ମଦନ କରଇ ମୋତେ ଅଛ କାତର
ଯୋଗ୍ୟଥାଏ ଦବାନଳି ଅନ୍ୟବନ୍ଦରେ ବସି
ଅଧର ଉପରେ ଦେବ ଚୁମ୍ବନ ତୋର
ଯେଉଁ ତୋର ବନସ୍ତ ଗୁଣ
ଘାର ହୋଉଥାଇ ନିରନ୍ତରେ ପରାଣ । ୪ ।

ନିରନ୍ତରେ ନୟନରେ ତୋ ରୂପଥାଇ ନିର୍ଭରେ
ନ ପିଛୁଡ଼ଇ ନୟନ ଅଦୃଶ ଡ଼ରେ
ନାଗଙ୍କରତନ ଜନ୍ମେ ଜନ୍ମେ ମୋତେ ମିଳିଥିବ
ନିରନ୍ତରେ ଏ ବର ମାଗଇ ଶଙ୍କରେ
ନୀରଜଲୋଚନୀ ଚତୁର !।
ନଷ୍ଟେ ମୁଁ ତୋହୋର ଦାସ ଶୁଣ ସୁନ୍ଦର !। ୫ ।

ଚନ୍ଦ୍ରମାବଦନ ତୋର ଚକୋର ଲୋଚନ ମୋର
ଚନ୍ଦ୍ରା କରୁଥାଇ ନିତ୍ୟେ ତୋର ବଦନ
ଚନ୍ଦ୍ର ଏବେ ବିଷ ମୋତେ ଜୀବନ ଥିବ କେମନ୍ତେ
ତୋହୋର ବନ୍ଧନେ ଗଲେ ଯାଉ ଜୀବନ

ଚାରୁକେଶି ! ମାଗଇ ତୋତେ
ଚତୋଇବୁ ଅନୁକ୍ଷଣେ ଚିତ୍ତରେ ମୋତେ । ୬ ।

ଛଣୋଦରି ! ଛିତିତଳ— ମଣ୍ଡନୀ ନାଗଣ୍ଡବର !
ତାପ ନ କରିବୁ ମନେ ବାଳିକା ମୋର !
ଛତ୍ର ଯେତେ ଦୂରେ ଥିଲି ଅଛି ତୋହୋ ପାଶେ ଭଲେ
ଶରୀରରୁ ଏମନ୍ତ ମୋ ଜୀବନ ତୋର
ଛାଡ଼ିପି ତୋ ମନରୁ ଚିନ୍ତା
ଛଇଳମୋହନ ତୁ ! ମୋ ଜୀବନଦାତା । ୭ ।

ଜଗନ୍ନାଥେ ଯୋଡ଼ି କର ମାଗୁଥାଇ ଏହି ବର
ଯୁବତୀରତନ ବାରେ ଦେଖାଅ ମୋତେ
ଯାମିନୀ ଶୟନେ ନେତ୍ରେ ନିଦ୍ରା ନ ମାଡ଼ଇ ମୋତେ
ପ୍ରାଣଧନ ସ୍ୱପ୍ନେ ଅବା ଦେଖନ୍ତି ତୋତେ
ଜପୁଥାଇ ସନ୍ତତ ଏହା
ଯୁବତୀରତନ କରିଥିବୁ ସୁଦୟା । ୮ ।

ଝଲକନୟନ ! ତୋର ସେନେହେ ବନ୍ଧେ ଗୃହିବା
ନୟନେ ମୋ ଦିଶୁଥାଇ ନିଶିଦିବସେ
ଝରଝର ତନୁ କ୍ଷୀଣ ଲୁଚଇ ନାହିଁ ଚନ୍ଦନ
ଝମଟେହେଁ ମିଳିବି ଟି ତୋହୋର ପାଶେ
ଝାଡ଼ିରେ ଯେ ଥାଇ ମାଳତୀ
ଝମ୍ପେହେଁ ଭୃଙ୍ଗ ନ ଛାଡ଼ଇ ତା କତି । ୯ ।

ନିର୍ମଳ-ନୀରଜ-ନେତ୍ରି ! ନିର୍ମଳ କେତକୀ-ଗାତ୍ରି !
କପା ପ୍ରାଣ ରହିଅଛି ତୋତେ ନ ଦେଖି

ନାହିଁ ମୋ ଦେହରେ ମନ          ଅଛି ତୋର ସନ୍ନିଧାନ
ନୟନ ପ୍ରତିମା ମୋର ଜୀବନ ସଖି
ନିଶି ଦିବା ଲକ୍ଷେ ବରଷ
ନ ଦେଖିବାରୁ ତୋହୋର ମଧୁର ହାସ । ୧୦ ।

ଟଳ ମୋ ଅଙ୍ଗରୁ ପ୍ରାଣ          ଯିବାକୁ ବସିଛି ଥାଇ
ତୋର ଆଲିଙ୍ଗନ ଭାବ ବିଚାରକରି
ଟାଙ୍କିଥାଇ ଅନୁକ୍ଷଣେ          ପ୍ରିୟା କି ଆସିବ ଏଣେ
ରହିଅଛି ପ୍ରାଣ ତୋର ଗୁଣ ସୁମରି
ଟେକି ଅଛି ଆଶ ମୁଁ ତୋତେ
ଟଳି କି ଆକାଶ-ଶଶୀ ପଡ଼ିବ ହସ୍ତେ । ୧୧ ।

ଠଣି ତୋହାର ପୟୋଧର          ଯେବେ ଧରିବ ମୋ କର
ସେ ଦିନ ଜନମ କାଳ ଫଳ ଦିଶିବ
ଠାଟିକି ଚିବୁକେ ତୋର          ପୁଣି କି ଲାଗିବ କର
ବିଧାତା କି ଏ ନିକଟେ ଏ ବର ଦେବ ?
ଠାବେ ଠାବେ ଲେଖି ତୋ ମୁଖ
ଠାଟିକି ଦର୍ଶନେ ସଖି ! ଲଭଇ ସୁଖ । ୧୨ ।

ଡାକୁ ଯେ ଡୋଳାରେ ଠାର          ଡମ୍ବରୁ-ମଧ୍ୟା ସୁନ୍ଦରି !
ଡାଳିମ୍ବ ବୀଜ ଦଶନା ! ସ୍ନେହରେ ମୋତେ
ଡକା କରଇ ମଦନ          ସେ କଥା ଚିନ୍ତିଲେ ମନ
ଦମକଇ ହୃଦ ମୋର ଚିନ୍ତିଲେ ତୋତେ
ଡରୁଥାଇ ତୋର କୋପକୁ
ଡର ଏବେ ହୋଇଲା ମଦନ ବାଣକୁ । ୧୩ ।

ତମ ପ୍ରାପ୍ୟେ ନ ମଣିମୁ ଏମନ୍ତ ନଷ୍ଟେ ଜାଣିମୁ
ଜୀବନ ଶରୀର ମୋର ଅଯୃତ୍ତ୍ୱ ତୋର
ତାଳ ତୋ ସୁଧା ଅଧରୁ ପାନ କରବାର ଯାଏ
ମତେ କ ଜୀଅଇଥିବ ପଞ୍ଚମ ଶର
ଛାଲେହେଁ ତୁ ପ୍ରଭୁ ମୋହର
ତମ ପ୍ରାପ୍ୟେ ନ ବୁଝିବୁ ନଷ୍ଟେ ତୋହର । ୧୪ ।

ଏଣାଙ୍କ ହୃଦସ୍ଥ କାଳେ ଅମ୍ବୁଜ ଦଳ ଲୋଚନ !
ଅତଙ୍କ ହୁଅଇ ସଖି ! ତୋ ମୁଖ ଚନ୍ଦ୍ର
ଅନ୍ୟେ ନ ଥାଇ ମନ ନିରନ୍ତରେ ତୋତେ ଧ୍ୟାନ
ରଜନୀ ପତିପରାଭ କରନ୍ତ ନିତ
ଅବନୀରେ ଯେତେକ ସୁଖ
ଅଣପ୍ରାପ୍ୟେ ନ ମଣଇ ଦେଖି ତୋ ମୁଖ । ୧୫ ।

ତରୁଣୀ କୁଳ ରତନ ତୋତେ ଲଭିଥିଲେ ମନ
ଅନ ନାରୀ ନିକଟକୁ କେମନ୍ତେ ଯିବ
ତୋ ଭାବ ରସ ସମାନ ନାହିଁ ନାହିଁ ତ୍ରିଭୁବନ
ରତିରସ ପରକର କେ ଜାଣିଥିବ ?
ତୁ ମୋହର ଜୀବଜୀବନ
ତୋର ବିନୁ କପା ରହିଅଛୁ ପରାଣ । ୧୬ ।

ଥେଣ୍ଡ-ଶିରୋମଣି ପ୍ରିୟା କରିଥିବୁ ମୋତେ ଦୟା
ଅପଣା ସେବକ ଦୋଷ କଲେହେଁ ସହି !
ଥିବୁ ଏମନ୍ତ ବିଚାରି ଅନ ମନରେ ନ ଧରି
ଦୋଷ ମୋର ଛାଡ଼ିଥିବୁ ପରାଣ ସହି !

ଥିବ ଦାସ ହୋଇ ତୋହର
ଥିଲ-ନତମ୍ବିନି ! ମୋର ଏହି ତଙ୍ଗର । ୧୭ ।

ଦୟାଜଲନଧି ପ୍ରିୟା ଦାସଜନେ କରୁ ଦୟା
ତେଣୁ ମୋହର ଭରସା ଅଛୁ ଅପାର
ଦେଖିଲେ ବଦନ ତୋର ଛାଡ଼ିବ ଦୁଃଖ ମୋହର
ଚନ୍ଦ୍ରିକା ରମଣୀ ତୁ ମୋ ସୁଖ-ସାଗର
ଦୟା ଯେବେ କରିବେ ହର
ଦେବ ତୋହର ସେବାକୁ ଶରୀର ମୋର । ୧୮ ।

ଧୀରଗାମୀ ନଶା କାଳେ ଏକାନ୍ତ ଶୟନ ବେଳେ
ମାନସିକେ ତୋତେ ଆଣି ସଙ୍ଗ କରଇ
ଧୀରେ ହୃଦରେ ପକାଇ ଅଧରେ ଚୁମ୍ବନ ଦେଇ
ନ ଦେଖି ନୟନୁ ବେଗେ ନୀର ଗଳଇ
ଧନ୍ୟ ଧନ୍ୟ ମହିମା ତୋର
ଧଇର୍ଯ୍ୟ ଭାଙ୍ଗଇ ଗୁଣ ଚିନ୍ତିଲେ ମୋର । ୧୯ ।

ନାହିଁ ନାହିଁ ନବ ପଞ୍ଚ— ଭୁବନେ ମହିମା ତୋର
ନଷ୍ଟେ ତୁ ନାଗରୀ-ଶିର ମୁକୁଟ-ମଣି
ନୟନେ ଯେହୁ ଦେଖିବ ସେ କି ତୋତେ ମୂରୁଛିବ
ମଦନ-ଜଳନିଧି କି ତୁ ସେ ତରଣୀ
ନୀରଧିରେ ଝାସିବ ଅଙ୍ଗ
ନାଗରୀ ରତନ ତୋର ଲଭିବ ସଙ୍ଗ । ୨୦ ।

ପଦ୍ମମୁଖୀ ପଙ୍କଜ ନ— ଯନ ତୋଲେ ମୋତେ ଦେଖି
ସନ୍ତୋଷ ହୋଇ ଉଠିବା ଭାବ ଚିନ୍ତିଲେ

ପରାଣ ଛୋଡ଼ଇ ତୋର ନୀଳକଣ୍ଠଙ୍କୁ ଗମିବାର
ନ ଯାଇ ରହଇ ଶିବ ଶିବ ବୋଇଲେ
ପାସୋରବୁ ନାହିଁଟି ମୋତେ
ପରାଣହିଁ ଦେବ ଧନ ! ତୋହ ନମିତ୍ତେ । ୨୧ ।

ଫୁରୁଣା-ଆନନ ! ମୋତେ ମେଲାଣି ଦେବା ସମୟେ
ଲୁହେ ଯେ ଅଜ୍ଞାନ ( ? ) କଲୁ ଲୋଚନ ବେନି
ଫୁଟିଲା ପରାଏ ହୋଇ ନିଶ୍ୱାସ ଖରେ ପକାଇ
କାତର ହୋଇଲୁ ମଥାଠାରୁ ସଜନି !
ଫୁଲିଲା ଯେ ସୁନ୍ଦର ନାସା
ଫାଟି କ୍ରୋଧରୁ ନଇଲା ମୁଖରୁ ଭାଷା । ୨୨ ।

ବସ୍ତୁର ସେ କଥା ମାନ ବୁଜଇ ବେନି ନୟନ
ବୋଲଇ ସେ ବଧୂମୁଖୀ କି କରୁଥିବ
ବସ୍ତୁର ମୋହର କଥା ପାଉଥିବ ବନ୍ଧୁ ବ୍ୟଥା
ନିରନ୍ତରେ ମୋର ମୁଖ ଧ୍ୟାନ କରିବ
ବାଲା ! ମୁଁ ବୋଲଇ ଏମନ୍ତ
ବେଭାରେ ତ ଜାଣି ଯେ ଯାହାର ଯେମନ୍ତ । ୨୩ ।

ଭଲ ଭଲ ଦେହ ଧାତା ଗଢିଲା ଏକ ଜୀବନ
ଭାବନ ! ଚନ୍ଦ୍ରଲୋଚନ ! ଏମନ୍ତ ଜାଣ
ଭେଟାଇଲା ଧାତା ଭଲା ଯୋଗରେ ସଙ୍ଗତେ ତୋର
ନିଶ୍ୱାସେ ମୁଁ ମୂର୍ଚ୍ଛିବି କି ପ୍ରେହା ନ ଜାଣ
ଭୋକୀ ମନ ଭାତେ ଯେସନ
ଭ୍ରମର ମାଲତୀ ବିନୁ ଆନରେ ମନ । ୨୪ ।

ମତ୍ତରାଜହଂସୀ ମନ କମଳ ମୃଣାଳ ବନ୍ଧୁ
ଆନରେ ରସଇ ନାହିଁ ମୃଗଲୋଚନ !
ମନରେ ଏଣୁ ଭରସା ଶୁଣରେ ସରୋଜ ଦୃଶା
ମୋର ବନ୍ଧୁ କେଢେ ନେଉଥିବୁ ରଜନୀ
ମତ୍ତପିକ ବୃନ୍ଦ ବଗୁଲେ
ମରୁନ ହୁଅଇ ନ ପାଇଲେ ବକଲେ । ୨୫ ।

ଜାଣୁଛି ଯୁବତୀ ର— ତନ ଯୁବା ଶିରୋମଣି
ଯାହା ବୋଲୁଅଛୁ ନଶି ଶେଷ କାଲରେ
ଯେମନ୍ତ ସେ କଥା ଆନ ନୋହୋଇ ଜାଣୁ-ରତନ !
ଯେମନ୍ତେ ଧନ୍ୟ ବୋଲନ୍ତି ଜନ ସଂସାରେ
ଯେତେ ତୋର ମୋର ବଶୃର
ଜପୁ ଜପୁ ସରଇ ରଜନୀ ବାସର । ୨୬ ।

ରମଣୀରତନ ବାମା ରସିକା-ପୂର୍ଣ୍ଣଚନ୍ଦ୍ରମା
ରସଇ ଯାହାର ମନ ଯାହାର ତହିଁ
ରସଇ କି ତାର ମନ ଦେଖିଲେ ସ୍ୱର୍ଗର ଜନ
ଏମନ୍ତ ବଶୃର ଥିବୁ ଅମଳମୁଖି !
ରତନ ସେ ସୁନାରେ ସଙ୍ଗ
ରେହାଇଲେ ଆନ ସଙ୍ଗେ ନ ଧରେ ରଙ୍ଗ । ୨୭ ।

ଲାବଣ୍ୟମଣି ସୁନ୍ଦର ! ଲାଜ ଲାଜ ଭାବ କର
ପ୍ରଥମ ସମ୍ଭେଟେ ମୋତେ କଥା ନ କହୁ
ଲୁଅଇଁ ବଦନ-ଇନ୍ଦୁ ବରଷାଇ ସୁଖ-ସିନ୍ଧୁ
ଭଲ କରି ମୋ ମୁଖକୁ ଟେକି ନ ଚାହୁଁ

ଆଜ ଯେବେ ଛାଡ଼ିଲୁ ମୋତେ
ଆବର୍ଣ୍ୟ ବଚନେ ବଶ କଲୁ କିମ୍ପତେ । ୨୮ ।

ବର୍ତ୍ତୁଳ ନିତମ୍ବ ଦେଶ ବକ୍ଷନ ମିତ୍ର ବନ୍ଧନ
ଦେଖିଲେ ହୃଦୟ ମୋର ହୋଏ ଅତୁର
ବୋଲଇ ବଧୂବଦନ ! ତୁ ମୋ ହୃଦୟମଣ୍ଡନ
ଦେଖାଇବୁ ନାହିଁ ମିଛି ବନ୍ଧନ ତୋର
ବାନ୍ଧବ ରେ କିସ୍ ଯେ ଶୁଣି
ବୁଝି ଏବେ ଭ୍ରମ ମୋର ସେ ରସ ଗୁଣି । ୨୯ ।

ଶରଦ ଶଶୀ କିରଣ କାହାକୁ କରେ ଶୀତଳ
ମୋତେ ଶୀତଳ କରଇ ତୋ ମୁଖ-ଚନ୍ଦ୍ର
ପତେନ୍ଦେ ଶଶିଶେଖର ଏହା କି କରବେ ମୋତେ
ତୋହୋ ମୁଖ ଦେଖି ହୋଉଥିବ ଆନନ୍ଦ
ପିକ୍ ତନ୍ତେ ଶିବ ସେବିବ
ସେ ଫଳ ପୁରୁଷୋତ୍ତମେ ତୋତେ ଲଭିବ । ୩୦ ।

ଶିରୀଷ କୁସୁମ ଅଙ୍ଗ ସଘନ ଜଘନ ତୋର
ନୟନଙ୍କୁ ବନ୍ଦୀ ଘର କାମଦେବର
ସତେନ୍ହେ କି ସରୁ ନଖ ତହିଁ ଦେବି ପ୍ରିୟେ ! ରେଖ
ଏତେ ବଡ଼ ଭାଗ୍ୟ କି ଘଟିବ ମୋହୋର
ସ୍ନେହ ଥାଉ ଥାଉ ବିଚ୍ଛେଦ
ଶୂଳଧର ନିବାର କି ପାରବେ ଖେଦ ? । ୩୧ ।

ସ୍ନେହେ ତୋତେ ପଚାରଇ ନଖ ଷତ ଦେବା ପାଇଁ
ଶ୍ରବାରେ ଯେ ହୋଉ ବୋଲୁ ବଦନ ଠାର

ସେ କଥା ମନେ ବିଚାରି ନ କରିବୁ ଦୁଃଖ ସଖି !
ଛାଡ଼ି ଥିବୁ ଦୁଃଖ ସଖି ! ଦୋଷ ବିଚାରି
ଶୟନରେ ହୋଇ ବିମନ
ସୁରତି ବିକାରେ ପୁଣି ହୋଇ ପ୍ରସନ୍ନ । ୩୨ ।

ହଂସଗମନ ! ସୁକେଶି ! ମୋତେ ଚାହିଁ ମନ ହସି
ଚୁମ୍ବନ ଦେବାକୁ ଓଷ୍ଠ ଯୋଡ଼ ଯେ କରୁ
ହରଷରେ ହୋଇ କୋପୀ ଦଶନେ ଅଧର ଚାପି
କମ୍ପିତ କର୍ଷାଇ ଶିର ନୟନେ ଠାରୁ
ହୋଇ କାମବାଣେ ଅସ୍ଥିତ
ହରଷେ ଶରୀର ଯାକ କର ବେପଥ । ୩୩ ।

କ୍ଷିତିତଳ-ମଣ୍ଡଳୀକ ବିଦେଶେ ଚନ୍ଦ୍ର ନାୟକ
ଦୂତ ହାଥରେ ଏ ଗୀତ ବାରତା ଦେଲା
ଯୋଗ ପୁଣି ପ୍ରିୟା କରେ ଶୁଣି ନାୟକ ପ୍ରିୟା ମରେ
ମଲେ ମୁଁ ନାଗ ଜୀଇବ ସେହିା ଲହିଲା
ଛାଛନେ ଚଉତିଶା ଶେଷ
ଛାଡ଼ାଅ ମନୁ ବିରସ କୃଷ୍ଣ ଯମେଶ । ୩୪ ।




କଟକ ପ୍ରାଚୀ ମୁଦ୍ରଣାଳୟରେ ଶ୍ରୀ ବହ୍ମନନ୍ଦଚରଣ ପଟ୍ଟନାୟକ ବି. ଏ. ଙ୍କ ଦ୍ୱାରା ମୁଦ୍ରିତ ।

# ଚଉତିଶା ଚନ୍ଦ୍ରିକା

## ମଥୁରାବିଜେ ଚଉତିଶା

୨—୨ କନ୍ଦର୍ପବାଧା—ମଦନବ୍ୟଥା । ୭।୧ ଦୁର୍ମିଳ୍ପସୁତ—କଂସ । ୭।୨ ଛଦ୍ମ—ବୃଥା ବଡ଼ାଇ । ୭।୩ ଦମନ—ମନଦୁଃଖ । ୮।୨ ଯାମଳା, ଚକା, ଅର୍ଘା—ସେହି ନାମର କଂସର ଅସୁର ଦୂତ । ୯।୩ ଝଗଡ଼ କର —କଳହ କର, ଅକ୍ରୋଶ ରଖି । ୧୧—୧ ଟଙ୍କଧର—ମହାଦେବ । ୧୧।୨—ଝାଙ୍କ—ଛଦ୍ମରହ୍ମ । ୧୨।୩ ଠାବକରବ—କଳନା କରବ । ଡମ୍ବରୁଧରରପୁଜନକ—ଡମ୍ବରୁଧର—ମହାଦେବ ତାଙ୍କରପୁ ମଦନ ତାଙ୍କ ଜନକ ଶ୍ରୀକୃଷ୍ଣ । ୧୫।୨—ଅମୃନ୍ତ—ଅମୃପାନଙ୍କୁ । ୧୭।୩ ଏଣୀନୟନା—ହରଣାକ୍ଷି । ୧୬।୩ ଉମାକାନ୍ତ—ମହାଦେବ । ୧୭।୩ ତହିଁ—ଠାରେ । ୧୯।୧ ଧରଣୀଧର—ଶ୍ରୀକୃଷ୍ଣ । ୧୯।୪ ଧାଇଁକାରେ—ଶୀଘ୍ର । ୨୧।୩ ଠାବ —ସ୍ଥାନ । ୨୨।୨ ଘଲଣା—ଆନନ୍ଦ । ୨୪।୩ ଭବାନୀପତିରପୁତାତ— ଭବାନୀ—ପାର୍ବତୀ, ପାର୍ବତୀଙ୍କ ପତି—ମହାଦେବ ତାଙ୍କ ରପୁ ଅର୍ଥାତ୍ ଶତ୍ରୁ —ମଦନ, ମଦନଙ୍କ ତାତ—ଶ୍ରୀକୃଷ୍ଣ । ୨୫।୧ ପାଞ୍ଚଧରଙ୍କ ତହିଁ— ଶ୍ରୀକୃଷ୍ଣଙ୍କଠାରୁ । ୨୬।୨ ତନଇ—ତନୟ, ପୁଅ । ୨୮।୨ ଭେଟି—ନିବେଶ କର । ୨୮।୪ ଲାବଣ୍ୟନିଧି—ଶ୍ରୀକୃଷ୍ଣ । ୩୧।୨ ଦୁରିତ—ପାପ ।

---

## ଦୀନବନ୍ଧୁ ଚଉତିଶା

୧।୧ ଭାଳେଣି—ଚିନ୍ତା । ୨।୧ ସଦନ—ଘର । ୨।୪ ବର୍ତ୍ତିବୁଁ—ବଞ୍ଚିବୁଁ । ୨।୫ ରୁହାଇବୁଁ—ରୋପଣ କରିବୁଁ । ୩।୨ ଅଚ୍ୟୁତ—ଅମୃତ ।

୪ । ୧ ନୀପ—କଦମ୍ବ । ୪ । ୫ ହୂସ୍ତ—ହୁଳି । ୫ । ୧ ସ୍ୱହାଗୀ—
ସୁହାଗବତୀ । ୫ । ୨ କାଳିଅ—କାଳୀୟ ସର୍ପ । ୫ । ୪ ବଟସାର
—ଟାପୋର । ୬ । ୨ ମୂରଛି—ଧମକଟମକ । ୬ । ୫ ଗୃଧିବି—
ଛେଳୁ ଛଦ୍ମଛଳ କରନ୍ତେବି । ୭ । ୨ ଶିଶ୍ୱାପତି—ଶ୍ରୀପତି—
ଲକ୍ଷ୍ମୀନାୟକ । ୮ । ୫ ଯୋଇ—ଯୁଗ କାଅଁ । ୯ । ୧ ଝିମ୍ପିବେ—ଝଟେ
୯ । ୨ ଝମ୍ପାଣି—ଠେଲିଦେଇ । ୧୧ । ୨ କାଣପଣି—କାଣିକଥା ।
୧୩ । ୪ ଡକା—ଅତ୍ୟାଗ୍ରହ । ୧୪ । ୨ ଘାଳଗୃହଁ ବାଜିଛେ—
ବାଙ୍କ ଗୃହାଣିରେ । ୧୪ । ୪ ଘାଳଗୃହଁ ବାର—ବାଙ୍କଗୃହାଣୀ ।
୧୪ । ୫ ଫନ୍ଦି—ବନ୍ଧଦୋଇ । ୧୬ । ୧ କନ୍ଦେଲୋଚନରପୁଣର—କାମଶର
୧୬ । ୧ ଥବିର—ସ୍ଥିର । ୧୮ । ୫ ଅଭ୍ରବ—ବେଅନ୍ତ୍ରଦ୍ଧ ।
୧୯ । ୪ ଧଳଅଛୁଁ—ମନେରଖିଅଛୁଁ । ୧୯।୫ ଧ୍ରୁବକର—ଧାର୍ମିକର ।
୨୨ । ୧ ଫାଇ—ଫିଟାଇ । ଫୁରୁଣା—ଅନନ୍ଦ । ୨୨ । ୪ ଫମ—
କଣ୍ଟିକ୍ର (?) ୨୩।୪ ବୋଲ—କଥା । ୨୬।୫ ଯୋଗରେ ରହିଲେ—
ମଥିର ନାହାଙ୍କ ପ୍ରେମ ଆରାଧନା ପାଇଲେ । ୨୮ । ରସାଉଛ—ରସରେ
ଡୁବାଉଛ । ୨୯।୧ ଲସ୍ତ କରିଥିବା ଯାକ—ଅମ୍ବଠାରେ ମନ ରଖିଥିବା
ଯାକ । ୩୧ । ୧ ଶଶାଙ୍କକ—ଚନ୍ଦ୍ର । ଭଗିବ—ଲଜ୍ଜାରେ ପଳାଇବ ।
୩୧ । ୨ ସାରେଣି—ସାରେଣି, ନହି । ୩୨ । ୨ ଛୁଟକର—ଫିଟାଇ ।

---

## ଗୋପଜୀବନ ଚଉତିଶା

୧।୪ କଟକାଳି—ପ୍ରଜା । ୧।୭ କକେ—କାହିଁକି ? ୧।୮
ମୃଦୁରସ—କୋମଳ କଥା । ୨ । ୧ ବୋଲ—କଥା । ୨ । ୩ ଖିସ ଖିସ
—ଖାଡ଼ା ଖାଡ଼ା । ୩ । ୧୩ ଟାଢ଼କୋପ—ଗରୁକୋପ । ୪ । ୬ ଘାଟ—
ଘାଠ—ବ୍ୟର୍ଥ । ୪ । ୧୦ ହାକ—ନିମନ୍ତ୍ରଣ । ୫ । ୨ ମଧୁଜୀବ—ଭ୍ରମର

୬ । ୧୪ ଚନ୍ଦ୍ର-ବଚନ । ୭ । ୧ ମୃଦାଂଘ—କ୍ଷେତ୍ର । ୮ । ୩ ରୁଦାଇ —ଅଟକାଇ । ୮ । ୬ ଲୁହ୍ୟନା-କ୍ଷେପଣା । ୮ । ୧୪ ଯୁଗଜଗତେ—ଦୁଇ ଜଗତରେ ୯ । ୬ ଝଲଲ୍ଲ—ଲକ୍ଷ୍ମି ରହଲ୍ଲ । ୧୧ । ୮ ଠମାଳ—ଥିଣ୍ଟା । ୧୬ । ୧୩ ଢକେ—କାହ୍ନ ବ । ୧୩ । ୧ ଅନ୍ୟେ—ହୃଦଯ୍ୱରୁ । ୧୩ । ୭ ଭଙ୍କ—ପାପ । ୧୩ । ୧୩ ଡେଲାଇ—ଛଡ଼ି । ୧୫ । ୧ ଅଣାଅପରାଧୀ—ନର୍ଦୋଷ । ୧୫ । ୩ ବଲଅଭଲୁଣି—ବଳେଇ ଲୁଣି । ୧୬ । ୩ ଭୁମ୍ବରେ—ଭୁମ୍ବ ଦ୍ୱାରା । ୧୬ । ୧୪ ଚାଓ୍—ଚଠରୁ । ୧୬ । ୧ ଥସ୍ୟେ—ସ୍ଥିର କର । ୧୭ । ୩ ଥାଉ ଧନ—ଯୋଇଲା ସମ୍ପଦ । ୧୯ । ୩ ଧନ୍ୟ ସେ ବ୍ରାହ୍ମଣ ନାରୀ—( ଶ୍ରୀକୃଷ୍ଣଙ୍କୁ ବ୍ରାହ୍ମଣ ନାରୀଙ୍କ ଅନ୍ନ ସମର୍ପଣ କଥା ଭାଗବତ ୧୦ମସ୍କନ୍ଧରେ ଦ୍ରଷ୍ଟବ୍ୟ) । ୨୧ । ୭ ପାଲଟି—ଫେର । ୨୨ । ୩ ପରୁଣା—ସୁଖ । ୨୨ । ୬ ଫାଇ—ଫେଡ଼ି । ୩୩ । ୮ ବରହ ପୁଚ୍ଛି ଥି—ମୟୂର ଚୂଳଥା । ୨୯ । ୩ ବଳ୍—ବଳୁଲୀ ୩୩ । ୮ ଦାକନ୍ତ—ଛାକନ୍ତ । ୩୪ । ୧ ଛୁଣ୍ଡାଲ—ରସିକ । ୩୪ । ୬ ଅଘ—ପାପ ।

---

## କୋଳାହଳ ରଉଡ଼ିଶା

୧ । ୧ କମ୍ବୁ—ଶଙ୍ଖ । ୧ । ୫ କଞ୍ଜନୟନ—ପଦ୍ମଆକ୍ଷି । ୬ । ୧ ସୁମନ—ନଷ୍ଟି କ୍ର । ୮ । ୪ ଆଖଣ୍ଡଳ—ଇନ୍ଦ୍ର । ୯ । ୫ ଝୋଉବିନୋଦ—ବନବିହାରୀ । ୯ । ୭ ଝସକେତନ—ମଦନ । ୧୩ । ୫ ଭଙ୍କ ନାଗଜ—କାଲୀୟ ସର୍ପ ଦଳନ । ୧୬ । ୩ ସୁଜାଣ—ବିବେକବନ୍ତ । ୧୬ । ୫ ତନୁଉଦ୍ଦମ୍ଯ—କ୍ଷୀଣୋଦରୀ । ୧୯ । ୫ ଧନା—ଅଡ଼ିଆ ୨୨ । ୧ । ଫର୍ଦୋଳ—ଚଳ ହୋଇ । ୨୫—୭ ରହୁବର—ରଥ । ୩୫ । ୭ ଯୋର—ଦୁଃଖ ।

---

## ଉଦ୍ଧବ ଚଉତିଶା

୪ । ୨ ଘାଉଅ—ଶରବନ୍ଧ । ୪ । ୪ ଘଟଣ ମୂରତି—ସୁନ୍ଦର ମୂର୍ତ୍ତି । ୬ । ୧ ଙ୍ଘଇ—ବୋଲି । ୭ । ୨ ଙ୍କନାଇ—ଙ୍କଣ୍ଠାଇ । ୭ । ୫ ଙ୍କନଅଳ—କପଟୀ । ୮ । ୪ ଯୋଗିନୀ—ମାତା । ୯ । ୧ ଙ୍ଖାଡ଼େ—ବଳରେ । ୧୨।୨ ସେଲ—ନିଶୁଣି । ୧୩।୪ ତଙ୍କ ଗାରଡ଼ିଅ—ସର୍ପ ଆଦୃତ୍ କଲ୍‌ବାଲା ଅର୍ଥାତ୍ କାଲୀପୂ ଦଳନ । ୧୩।୫ ଉରଭାଟେ—ନିପୂରକ୍ଷି । ୧୫।୨ ଅଣାରତ୍ନ—ଦଗଦର । ୧୫।୫ ଅନବ୍ରତେ—ଦ୍ୱନ୍ଦା । ୧୬ । ୫ ଭୁଲସା ବଙ୍କବ—ଶ୍ରୀକୃଷ୍ଣ । ୧୭ । ୫ ଥାବର—ଗଛ । ୧୯ ୫ ଧରଣୀ ପତି—ଶ୍ରୀକୃଷ୍ଣ । ୨୪ । ୪ ଭଜନ୍ତ—ଭକ୍ତ, ଯେ ଭଜନା କରେ । ୩୨ । ୧ ଗୋପୀନ୍ତ—ଗୋପୀମାନଙ୍କ । ୩୨ । ୨ ଭାବନ୍ତର—ପୂର୍ବଥିବାର ଭାବ ଜାଣି ପାଇଁ । ୩୪ । ୧ ମଙ୍ଗଳ—ବନ୍ଦାପନା ।

---

## କୃଷ୍ଣ ବିଚ୍ଛେଦ ଚଉତିଶା

୧ । ୧ଅଖଣ୍ଡକତ—ଅବଶ । ୧ । ୩ କାକୁସ୍ତ ବାଣୀ—କାତର କଥା । ୪ । ୨ ଘନବରନା—ଘନଶ୍ୟାମ । ୭ । ୩ ଅଚେତନ—ଢୋଲାଚଲା, ଠାର । ୧୨ । ୨ ଅନାସ୍ତ—ଅନାଥ । ୧୨ । ୨ ଛମେଥ—ବଡ଼ଙ୍କୁନ୍ଦା । ୧୬ । ୨ ନବ ଯଉବନୀ—ନବ ଯୁବତୀ ।

---

## ନବଘନ ଚଉତିଶା

୧୧ । ୫ ଘରବୁଡ଼ା—ପର ସ୍ତ୍ରୀ ହରଣ କାରୀ । ୧୬ । ୧ ଭୁଟି—ଗାଳିଦେଇ । ୧୭ । ୧ ଥୋଣ୍ଟପଢ଼—ଦୁର୍ଦ୍ଦାନ୍ତ ଖେଳର । ୨୮ । ୪ ଭଙ୍ଗ ହେବେ—ବ୍ରତ ଭାଙ୍ଗିବେ ।

---

## କୃଷ୍ଣ ବିରହ ଚଉତିଶା

୧।୪ କୁସୁମ ବିଶିଖ—ଫୁଲଶର । ୨।୪ ଖେଦଜଳଧି—ଦୁଃଖସାଗର । ୪।୨ ବିଷାଇଲ—ବିଷ ବୋଲା ହୋଇଥିବା । ୧୨। ୩ ଠଣ ସରିକି ମୁଖ—ସୁନ୍ଦର ପଦ୍ମମୁଖ । ୧୮।୨ ଭୁଜଙ୍ଗଧର ରିପୁ—ସର୍ପଧାରୀ ମହାଦେବଙ୍କ ଶତ୍ରୁ ଅର୍ଥାତ୍ ମଦନ । ୧୩। ୪ ତ୍ରେଲାଇବି—ଛାଡ଼ିବି । ୧୪। ୩ ଛମାଳ ବୋଲରଣୀ—ଥକ୍କା ପରିହାସରେ । ୧୫। ୧ ଅମଳ—ନିର୍ମଳ । ୧୫। ୩ ଅତନୁ—ମଦନ ୧୬। ୨ ତ୍ରିଦଶ—ଦେବତା । ୨୧। ୧ ଦେହ—ଦେହ । ୨୧।୩ ପରଭୃତବଚନୀ—କୋକିଳବଚନା । ୨୪। ୧ କୁରଙ୍ଗଶାବାକ୍ଷି—କୁରଙ୍ଗଶାବାକ୍ଷି—କୁଆ ମୃଗ ନୟନ ପରି ନୟନ ଯାହାର । ୨୨। ୨ ରୟଣୀନାଥ—ଚନ୍ଦ୍ର ।

---

## ଚନ୍ଦ୍ରାବଳୀ ଚଉତିଶା

୨।୩ ମନ୍ଦୁର—ଏକପ୍ରକାର ବସ୍ତ୍ର । ୩।୧ ଗହଣ—ସୁନ୍ଦର । ୫।୨ କାଧନ ଧନଆ—ରିଙ୍କପସରୀ । ୬। ୨ ରସିକା ନାଗରୀମାନେ ଗୃହକୁ ଦେଲେ ସେ ନବଘନ । ୭। ୪ ଫେର—ଫେରାଇ । ୯। ୧ ଝୁକିଥିଲ—ଲୁଚିଥିଲ, ତହିଁ—ଠାରେ । ୧୦। ୩ ନୀପମୂଳଆ—କଦମ୍ବ ମୂଳଆ । ୧୧। ୧ ଟେକସ୍ତନାଳଥ—ଯେ ଟେକ ଅର୍ଥାତ୍ ଗର୍ବ ଭାଙ୍ଗିଦିଅନ୍ତି । ୧୩। ୧ ଡଙ୍କୁଲଗେଲା—ପାପକାମୁଣ୍ଡିଲା । ୧୪। ୩ ଛମଟଣ—ଗର୍ବ । ୧୬। ୩ ଭଗା—ସ୍ତ୍ରୀ । ୧୮। ୨ ବହୁଢ—ଉଚିତ । ୨। ୩ ପୀରତି—ପ୍ରେମିକା । ୨୬। ୪ ଉଠାଇ—ଟେକି ରଖିଅଛୁ, କୁଢ଼ ସାନ୍ତାଣି । ୨୮। ୧ କେଖ—ରାତି । ୨୮। ୨ ଲହଦେବା—ଲେଖିଦେବା । ୩୦। ୧ ଶ୍ରୀବନ୍ତୁ—ପୁଲକଣୀ ।

---

## କାଦମ୍ବିନୀ ଚଉତିଶା

୧ । ୬ କାଳନ୍ଧା—ମେଘ । ୧।୩ କାଦମ୍ବିନୀ—ମେଘ । ୪।୧ ଘନପୀନ ପୟୋଧର—ଘନଘନସ୍ତନା । ୭ । ୬ ଖଞ୍ଜସୁପାଦ—ଖଞ୍ଜରୂପଖଞ୍ଜ ୮ । ୬ ଜାଣ୍ମଣି—ବିବେକବନ୍ତ । ୯ । ୬ ଝୁଲଗୋଷ୍ଠି—ଦ୍ରବ୍ୟଗୋଷ୍ଠ । ୧୦ । ୧ ନନ୍ଦନ—ଅନଙ୍ଗ, ମଦନ । ଢଳାମେଘୀ ଶାଢ଼ୀ—କଳାଶାଢ଼ୀ ୧୧ । ୪ ମଟନାଳ—ମଦନ । ୧୩ । ତାନୁଙ୍କ ଅଡ଼ମ୍ବର କରୁ ଉଚଟେ ଜାଙ୍କଲେ କାମରୂପ ଅହି ଅର୍ଥାତ୍ ସାପ ଜାଗିଉଠେ । ତାଙ୍କୁ ଡ଼ମ୍ବରୁ କଷ୍ଟଭୁଲ ଷୀଣକଣ୍ଠ ମୋ ରମା ଓଷ୍ଠା ଅର୍ଥାତ୍ ଗାରୁଡ଼ଥି ଝୋଇ ଜବତ୍ କରେ । ୧୫ । ୬ ଅପସର—ତକଥା ୧୭ । ୪ ଭଲାନୁଲ—ଭଲଠାରୁ ସାନ । ୨୧ । ୬ ଟେସ ରାତ୍ରକୁ ଅରାତ ଅର୍ଥାତ୍ ଶତ୍ରୁ ପରି ମନେ କରୁଥିବ । ୨୧ । ୪ ନନ୍ଦପ୍ରଭ—ସନ୍ଧ୍ୟନ । ୨୭ । ୬ ଯୋଗୀନ୍ଦ୍ର—ମହାଦେବ । ୩୨।୧ ପାଲଙ୍କ—ପଲଙ୍କର । ୩୪।୧ କ୍ଷୀର ସିନ୍ଧୁ ସୁତା ପତି—ଲକ୍ଷ୍ମୀନାୟକ ଶ୍ରୀଜଗନ୍ନାଥ ।

---

## ଉଦ୍ଧବ ଚଉତିଶା

୧ । ୧ ଗୁଣି—ଗୁଣ । ୧ । ୫ ଫଣୀ—ସାପ । ୬ । ୧ ଖେଳାଉଡ଼—ଖେଳାଳି । ୬ । ୬ ରମ୍ଭାତରୁ—କଦଳୀ ଗଛ ଫଳ ଫଳି ଯେପରି ମରଯାଏ ଅମ୍ଭେମାନେ ସେହିପରି ହେଲୁଁ । ୬ । ୫ ପରମାନନ୍ଦ ଅର୍ଥାତ୍ ଶ୍ରୀକୃଷ୍ଣଙ୍କ ପ୍ରୀତି ଖଣ୍ଡର ପ୍ରୀତି ରେ ଏ ପରଚସ୍ତୁ ଯେତେବେଳେ ପାଇଲୁଁ ତେତେବେଳେ ପ୍ରାଣ ରକ୍ଷିବା ସନ୍ଦେହ ହୋଇ ପଡ଼ିଲା । ୩ । ୧-୬ ଗରୁ ଯଉବନୀ—ବିପୁଳ ଯୌବନୀ । ଫିଙ୍ଗ ଯେପରି ନଜର ପ୍ରତିବମ୍ବକୁ କୂଅ ପାଣିରେ ଦେଖି ତେଇଁ ପଡ଼ିଲା ଅମ୍ଭେ ସେହିପରି ଗୋବିନ୍ଦଙ୍କ

ନଟେ ପ୍ରେମରୂପ ବୃକ୍ଷକୁ ଭାଙ୍ଗି ପଡ଼ିଲୁଁ । ୩ । ୪ ଗତ ମହୁମାଛି-
ଯେଉଁ ମହୁମାଛି ମହୁ ଖାଇ ବାହାରି ଗଲାଣି । ୪ । ୫ ଦର୍ପଣ ମଧ୍ୟଗତ
ସୁନ୍ଦର ରୂପ ଯେପରି ଆଲିଙ୍ଗନ କରି ନ ହୁଏ ସେହିପରି ତାଙ୍କ ରୂପ
ଚିତ୍ତଅଟେ ଦିଶୁଥିଲେ ହେଁ ତାକୁ ଆଲିଙ୍ଗନରେ ଆଣି ହେଉ ନାହିଁ ।
୫ । ୧-୨ ଶ୍ରୀକୃଷ୍ଣ ଚାଲି ଯିବାରୁ ପ୍ରେମ ବନ୍ଧ ହୋଇ ଗଲା ଓ ଆମ୍ଭ
ଆଖିରୁ କୃଷ୍ଣରୂପ ପ୍ରତିମା ଚାଲି ଯିବାରୁ ଆମ୍ଭେ ସେ ବନ୍ଧ ଆଉ ଫିଟି
ପାରିଲୁଁ ନାହିଁ । ୬ ଚନ୍ଦ୍ରରେ ଯେପରି ସର୍ବଦା କଳଙ୍କ ଥାଏ ସେହିପରି
ଦିନ ରାତି ଜାଗରଣ ସବୁବେଳେ ତାଙ୍କ ରୂପ ଆମ୍ଭ ହୃଦରେ ଲାଗି
ରହିଅଛି । କିନ୍ତୁ କଣ ହେବ ଭାବିଲା ଧନ ଚିତ୍ରରେ ଲେଖା ହୋଇଥିବା
ଫଳ ପୁଷ୍ପ ପରି; ଭୋଗ କରି ହେବାର ଜିନିଷ ନୁହେ । ଚନ୍ଦ୍ରକୁ ଚକୋର
ଯିବା ଚାହିଁ ଚାହିଁ ମନ ବୋଧ କରେ କିନ୍ତୁ ଭ୍ରମର ନିଜର ଆକାଙ୍କ୍ଷିତ
ଫୁଲରୁ ମହୁ ନ ଖାଇଲେ ବୋଧ ହୁଏ ନାହିଁ । ୯ । ୧ ଝୁଲିଲା—
ଲାଗିଗଲା । ୧୧ । ୫ ଆମ୍ଭେ ମହାଦେବ ନୋହୁଁ ଯେ ତୁମ୍ଭେ ଯୋଗ
ଶିଖାଇଲେ ଆମ୍ଭେ ପସନ୍ଦ କରିବୁଁ । ୧୪—କଷ୍ଟସାଧ୍ୟ ଯୋଗ କରି କୃଷ୍ଣଙ୍କୁ
ପାଇବାର ଯାହା ଉପଦେଶ ଦେଲ ତାହା ବୃଥା ନୁହେ କିନ୍ତୁ
ସେ କାଳିଆ କାହ୍ନୁକୁ ଯେ ଆଖି ଆଗରେ ଦେଖୁଥିବ ସେ ଯୋଗ
ଯୋଗରୁ କଣ ପାଇବ ?

୧୬ । ୧ ଗୁଞ୍ଜାଫଳ—କାଇଁଚ । ୧୬ । ୪ ଭୁଟ୍ଟି—ଚଳହୋଇ ।
୧୭ । ୧ ଥୋକାଏ ଛନ୍ଦି । ୧୭ । ୬ ଦଗବାସ—ଜ୍ୱଳନ୍ତ । ୨୧ । ୨
ବାର ବରଷ ମଉଳା ପୋଷେ । ଖୁନ୍ଦା ଦେଖିଲେ ଜଙ୍ଗଲରେ ବସେ ।
୨୪ । ୧ ଜଳଜଳକା—ଲୁହରେ ଅନ୍ଧ । ୨୪ । ୨ କୁଣ୍ଡିତ—ରୁଦ୍ଧ ।
୨୬ । ୧ ଅମ୍ବିକା—ଦୁର୍ଗା । ୨୯ । ୪ ଯନ୍ତ୍ରା—ଦଶା । ୩୧ । ୫
ଗୋପିକା ଗୋଷ୍ଠକେ କୋଟିଏ ମୁନି ଏହା ଛପା ହୋଇଥାନ୍ତା—

ତୂଳରେ ଛପା ହୋଇଅଛି । ୩୨ । ଗୋପରୁ ସ୍ତ୍ରୀ ଲୋକଙ୍କ ବସ୍ତ୍ର ଓ ଅଳଙ୍କାର ଯୋଗାଉଥିବା ବ୍ୟବସାୟୀମାନେ ବାହାର କଲେଣି କାରଣ ଗୋପୀମାନେ ଆଉ ଅଳଙ୍କାର ପ୍ରତି ଉଦାସୀନା ହୋଇ ପଡଲେଣି । ୩୩ । ୫ ହୀରା ସବୁଠାଉଁ ଟାଣ ଜିନିଷ ।

---

## ବିଷ୍ଣୁଦାସଙ୍କ ଚଉତିଶା

୧ । ୧ କୁରଙ୍ଗ ଅଙ୍କବଦନୀ—ଚନ୍ଦ୍ରବଦନୀ । ୨ । ୭ ଖଣ୍ଡେନ୍ଦୁଶେଖର—ମହାଦେବ । ୪ । ୫ ନୀରଜ ଲୋଚନୀ—ପଦ୍ମନୟନା । ୨୨ । ୧ ଫୁରୁଣା ଆନନୀ—ଆନନ୍ଦମୟ ବଦନା । ୩୧ । ୬ ଶୂଳଧର—ମହାଦେବ । ୩୩ । ୭ ବେପଥ—କମ୍ପ ।



## ପ୍ରାଚୀ ସମିତି ପ୍ରକାଶିତ

ଭଲ ବହ୍ନରୁ କେତେ ଖଣ୍ଡ

# ଚଉତିଶା ମଧୁଚକ୍ର

## ମଧୁର ଚଉତିଶାମାନଙ୍କର ସମାବେଶ

| | |
|---|---|
| ପ୍ରଥମ ଖଣ୍ଡ | ୫ ° ୳ |
| ଦ୍ୱିତୀୟ ଖଣ୍ଡ | ୬ ° ୳ |
| ତୃତୀୟ ଖଣ୍ଡ | ୫ ° ୳ |
| ଚତୁର୍ଥ ଖଣ୍ଡ | ୫ ° ୳ |

# ରାମବିଭା

ସୁମଧୁର ଲଳିତ ଭାଷାରେ ଭଗବାନ ରାମଚନ୍ଦ୍ରଙ୍କର

ବୀରତ୍ୱ ପୂର୍ଣ୍ଣ ବାଲ୍ୟ ଜୀବନ ଓ ବିବାହ ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି ।

ନୀଳ ନଳଧରୁ କାନ୍ତି, ରୁଚିର ଶରୀର ଭାନ୍ତି ।
ନୟନ କମଳ ଫୁଲ, ରୂପେ ଅତୁଲ୍ୟ ଯେ । ୬ ଛ ୬୧ ।
ପିନ୍ଧିଣ ପୀତ ଦୁକୂଳ, ମଉଳ ମାଧବୀ ଚୂଳ ।
କଟିକଟେ ପରବେଶ ମଦନ ବେଶ ଯେ । ୬ ଛ ୬୨ ।

ମୂଲ୍ୟ ଅଠଅଣା ମାତ୍ର ।

# ରହସ୍ୟ ମଞ୍ଜରୀ

ସରସ ପଦର କାବ୍ୟ ପଢ଼ିଲେ ମନରୁ ଯାଏ ନାହିଁ, ଉଚ୍ଚାରିଲେ ଗୋଟିକଯାକ ଉଚ୍ଚାରିବାକୁ ଇଚ୍ଛା ହୁଏ । ମାତ୍ର ନବମ ଛନ୍ଦରୁ ଦୁଇଟି ପଦ ଦିଆଗଲା ।

ସଜଳ ଜଳଦ କାନ୍ତି, ନୀଳମଣି ଜିଣି ଭାନ୍ତି
ଅମଳ କମଳ, ମୁଖ ମଞ୍ଜୁଳ ଅଳକ ଅଳକାପନ୍ତି ।
କୁଞ୍ଚିତ କୁନ୍ତଳ ଚୂଳେ, ରଞ୍ଜିତ ବିବିଧ ଫୁଲେ
ବାନ୍ଧେ ଝଲମଲ ମୟୂର ପୁଚ୍ଛ ମତ୍ତ ମଧୁକର ଭୁଲେ ।

ମୂଲ୍ୟ ବାରଅଣା ମାତ୍ର ।